

# ଲଡୁବାବା ବିଳାସ

ରଚନା

**ସୁରେଶ ଚନ୍ଦ୍ର ବରାଡ଼**



# ଲଡୁବାବା ବିଳାସ





ରଚନା

ସୁରେଶ ଚନ୍ଦ୍ର ବରାଡ଼

# ଲଡୁବାବା ବିଳାସ

# *LADUBABA BILASH*

ରଚନା:
ସୁରେଶ ଚନ୍ଦ୍ର ବରାଡ଼
ଗ୍ରା/ପୋ:ହରିହରପୁର, ଭାୟା:ଶରଣକୁଳ,
ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭

Writer:
**Suresh Chandra Barad**
AT/PO:Hariharpur, Via:Sarankul
DIST:Nayagarh,
ODISHA, 752080
Mob: 9437958077

ପ୍ରକାଶକ :
ସୁରେଶ ଚନ୍ଦ୍ର ବରାଡ଼
ଗ୍ରା/ପୋ:ହରିହରପୁର, ଭାୟା:ଶରଣକୁଳ,
ଜିଲ୍ଲା:ନୟାଗଡ଼
ଓଡ଼ିଶା, ପିନ୍:୭୫୨୦୮୦
ଦୂରଭାଷ:୯୪୩୭୯୫୮୦୭୭

Publisher:
Suresh Chandra Barad
AT/PO:Hariharpur, Via:Sarankul
DIST:Nayagarh,
ODISHA, 752080
Mob: 9437958077

ମୁଦ୍ରଣ, ପ୍ରଚ୍ଛଦ ଓ ପରିପାଟୀ
ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍
ଶରଣକୁଳ, ନୟାଗଡ଼
ମୋ-୯୮୫୩୨୫୨୮୪୩,

Printing, Cover Design:
Jagannath Printing Press
Sarankul, Nayagarh
Mob: 9853252843

ପ୍ରଥମ ପ୍ରକାଶ:
୨୦୨୦ ମସିହା

First1ST EDITION:
Year 2020

ଛପା ସଂଖ୍ୟା:
୧୦୦୦

Copy:
1000

ମୂଲ୍ୟ:
ଟ.୨୨୫.୦୦
(ଦୁଇଶହ ପଚିଶ ଟଙ୍କା ମାତ୍ର)

Price:
225/-
(Two hundred &twenty five only)



ISBN :978-93-5408-956-5





## ମୋ କଥା...............

ଅକର୍ମ କର୍ମଦାୟକ, ଅଶରଣର ଶରଣ, ଆଶୁତୋଷ ପ୍ରଭୁ ଲଡୁକେଶ ମହେଶ, ଲଡୁବାବା ନାମ ବହି କାହିଁ କେଉଁ ଅନାଦି କାଳରୁ ରୋଗୀର ରୋଗ, ଦୁଃଖିର ଦୁଃଖ, ମୋହାନ୍ଧର ମୋହ, କଷ୍ଟିର କଷ୍ଟ ତଥା ଆର୍ତ୍ତିର ଆର୍ତ୍ତ ଦୂର କରିବା ନିମନ୍ତେ ସେମାନଙ୍କୁ ଶରଣ ଦେବା ପାଇଁ ଶରଣକୁଳରେ କରିଛନ୍ତି ବିରାଜମାନ । ଇତିହାସ ତାଙ୍କର କାଳର କରାଳ ଗର୍ଭରେ ବିଲୀନ । କିମ୍ବଦନ୍ତୀରେ ସ୍ୱଷ୍ଟ ତାଙ୍କର ମହିମା । ଛତ୍ରାକାର ଲିଙ୍ଗ ରୂପେ ହରିହର ମୂର୍ତ୍ତି, ଗୋଷ୍ପଦ, ଯଜ୍ଞୋପବିତ ତଥା ଶଶାଙ୍କ ଚିହ୍ନକୁ ଧାରଣ କରି ଉଭୟ ବୈଷ୍ଣବ ଓ ଶୈବ ଦର୍ଶନ ସହିତ ଶାକ୍ତ, ଗାଣପତ୍ୟ ତଥା ସୌର ଦର୍ଶନକୁ ନିଜ ଭିତରେ ଗର୍ଭସ୍ଥ ତଥା ଆତ୍ମସ୍ଥ କରି ଭକ୍ତମାନଙ୍କୁ ମନୋବାଞ୍ଛିତ ଫଳ ପ୍ରଦାନ ନିମନ୍ତେ ସିଂହଦ୍ୱାର ଉନ୍ମୁକ୍ତ କରି, ଅଛନ୍ତି ଯୋଗସ୍ଥ । ଭକ୍ତର ଗମ୍ଭୀର ଆର୍ତ୍ତ ପ୍ରାର୍ଥନାରେ ତାଙ୍କର ଗମ୍ଭୀରା ଯେତେବେଳେ ଶବ୍ଦାୟିତ ହୁଏ ସେତେବେଳେ ଯୋଗ ଭାଙ୍ଗି ସେ ପାଲଟି ଯାଆନ୍ତି ଆଶୁତୋଷ । କାର୍ପଣ୍ୟକୁ ସେ କରିଛନ୍ତି ଭସ୍ମିଭୂତ । ଏଣୁ କାହିଁ କେତେ କାମନା ନେଇ ଭକ୍ତଗଣ ହୁଅନ୍ତି ତାଙ୍କ ଦ୍ୱାରସ୍ଥ ।

ପ୍ରଭୁଙ୍କର ଶିବରାତ୍ର ସମୟରେ ଏକ ସୂଚନା କେନ୍ଦ୍ରକରି ମନ୍ଦିର ସମ୍ମୁଖରେ ରାତ୍ରି ସାରା ଉଜାଗର ରହି ଭକ୍ତମାନଙ୍କୁ ସାହାଯ୍ୟ କରିବା ଛାତ୍ର ଜୀବନର ଏକ ବ୍ରତ ଥିଲା, ଯାହାକୁ ହରିହରପୁର ଚାରଣଶାଖା ନାମରେ ପ୍ରାୟ ୨୦ ବର୍ଷ ଚଳେଇବା ସମୟରେ ପ୍ରଭୁଙ୍କ ମହିମା ସଂପର୍କରେ ଏକ ପୁସ୍ତକର ଆବଶ୍ୟକତା ଅନୁଭବ କରାଯାଇଥିଲା ଭକ୍ତମାନଙ୍କର ଇଚ୍ଛା ଅନୁସାରେ । ସେଥିରୁ ପ୍ରେରଣା ପ୍ରାପ୍ତ କରି ୨୦୦୩

ମସିହାରେ ଲୋକଲୋଚନକୁ ଆସିଥିଲା ଗବେଷଣାତ୍ମକ ପୁସ୍ତକ ମହିମାମୟ ଲଡ୍ଡୁବାବା । ତେବେ ବହିଟିର ୨୦୦୦ କପି ଇତି ମଧ୍ୟରେ ସରି ଯାଇଥିଲେ ମଧ୍ୟ ସାଧାରଣ ଭକ୍ତମାନେ ପ୍ରଭୁଙ୍କ ସମ୍ବନ୍ଧରେ ଏକ ପଦ୍ୟ ପୁସ୍ତକ ଖୋଜିବାର ଅନୁଭବ କରାଗଲା । ତାକୁ ରୂପ ଦେବାପାଇଁ ସମ୍ପାଦକର ଦାୟିତ୍ୱ ନେଇ ଲଡ୍ଡୁବାବା ଭଜନମାଳା ନାମରେ ଏକ ଭଜନ, ଜଣାଣ ଓ କବିତାର ସଂଗ୍ରହ ପୁସ୍ତକ ୨୦୧୯ ମସିହା ଶିବରାତ୍ରରେ ପ୍ରକାଶିତ ହୋଇଥିଲା । ଏଥିରେ ନୟାଗଡ଼ ଜିଲ୍ଲାର ଲବ୍ଧପ୍ରତିଷ୍ଠିତ ପ୍ରାୟ ୪୦ ଜଣ କବିଙ୍କରପ୍ରଭୁଲଡ୍ଡୁବାବାଙ୍କ ସଂପର୍କରେ ଭଜନ, ଜଣାଣ, ଚଉପଦୀ, ପଞ୍ଚକ, ଅଷ୍ଟକ, ଚଉତିଶା ଓ କବିତାର ସଂଗ୍ରହ ସନ୍ନିବେଶିତ ହୋଇଥିଲା । କରୋନା ସମୟରେ ଘରେ ବସିବା ସମୟରେ ଲଡ୍ଡୁବାବାଙ୍କ ମନ୍ଦିର ମଧ୍ୟରେ ଥିବା ଦେବଦେବୀମାନଙ୍କ ସ୍ତୋତ୍ରକୁ ନେଇ ଏକ ପୁସ୍ତକ ଲଡ୍ଡୁବାବା ସ୍ତୋତ୍ରମାଳା ଲେଖା ସରିବା ପରେ ପରେ ଓଡ଼ିଶା ମୁକ୍ତ ବିଶ୍ୱବିଦ୍ୟାଳୟ, ସମ୍ବଲପୁରର ଓଡ଼ିଆ ବିଭାଗ ସ୍ନାତକୋତ୍ତର(ଏମ.ଏ.) ପାଠ୍ୟକ୍ରମରେ ନାମ ଲେଖାଇ ରବିବାସରୀୟ କ୍ଲାସ କଲାବେଳେ ପୂଜ୍ୟ ପ୍ରଫେସର ଡ.ଗୋବିନ୍ଦ ଚନ୍ଦ୍ର ଦାଶଙ୍କ ଓଡ଼ିଆ ସାହିତ୍ୟର ରୀତିଯୁଗୀୟ କାବ୍ୟ ସଂପର୍କରେ ଆଲୋଚନା ମନ ମଧ୍ୟରେ ଗଭୀର ରେଖାପାତ କରିଥିଲା । ତାହା ଅବଚେତନ ମନରେ ଥିବା କେବେ ଗଜୁରୀ ଅଗ ମୁଣ୍ଡାମାରି ଯାଇଥିବା ସୁପ୍ତ ଗଜାକବିଟିକୁ ଜାଗ୍ରତ କରିଥିଲା ଯାହା ଫଳରେ ପ୍ରଥମେ ପ୍ରଭୁ ଲଡ୍ଡୁବାବାଙ୍କର ଭଜନ ସମ୍ବଳିତ ଏକ ଚଉତିଶାର ସୃଷ୍ଟି ହୋଇଥିଲା । ତାକୁ ସଂଶୋଧନ କରି ଟିକେ ପ୍ରଶଂସା ସହ ଉତ୍ସାହିତ କରିଥିଲେ ନିରାକାର ଭାଇ ଓ ଗୋଦାବରୀ ଭାଇ । ଯାହାକି ମହିମା ମୟ ପ୍ରଭୁ ଲଡ୍ଡୁବାବାଙ୍କ ଉପରେ ଏକ ବୃହତ ରାଗ ଭିତ୍ତିକ କାବ୍ୟ ଲେଖିବା ପାଇଁ ପ୍ରରୋଚିତ କରିଥିଲା । ପ୍ରଭୁଙ୍କର ଇଚ୍ଛାରେ ତାହାର ଫଳଶୃତି ଆପଣଙ୍କ ସମ୍ମୁଖରେ "ଲଡ୍ଡୁବାବା ବିଳାସ" ରୂପରେ ।

ସମୟ ଦେଇ କାବ୍ୟଟିର ସଂଶୋଧନ କରିବା କଷ୍ଟ ନେଇଥିବା ଅନୁଜ କଳ୍ପ କବି ନିରାକାର ସ୍ୱାଇଁ, କବି ଗୋଦାବରୀ ବସନ୍ତିଆ, ବଡ଼ ଭାଇ ଶ୍ୟାମସୁନ୍ଦର ସ୍ୱାଇଁଙ୍କ ଭଲପାଇବା ମୋ ପାଇଁ ପ୍ରେରଣାର ସ୍ରୋତ ।

ଲଡ୍ଡୁବାବାଙ୍କ ମନ୍ଦିର ପରିଚ୍ଛା ଅଗ୍ରଜ କଳ୍ପ ତୋଷବନ୍ତ କର ନିଜର ବ୍ୟସ୍ତ ବହୁଳ ଜୀବନରୁ ସମୟ କାଢ଼ି କାବ୍ୟଟିକୁ ଆମୂଳଚୂଳ ପାଠକରି ଦେଇଥିବା, ସନ୍ନିବେଶିତ ତଥ୍ୟ, ପୌରାଣିକ କଳ୍ପନା, ମନ୍ଦିର ନୀତି ସଂପର୍କୀୟ ସମୟୋପଯୋଗୀ ସୁପରାମର୍ଶ ତାଙ୍କର ମୋ ପ୍ରତି ଥିବା ସ୍ନେହକୁ ପ୍ରମାଣିତ କରିବା ସହ ମୋତେ ଅଭିଭୂତ କରିଛି ।

ପୁରୀରୁ ଭ୍ରାତୃକଳ୍ପ ଶ୍ରୀ ଗୋବିନ୍ଦ ବେହେରାଙ୍କ ପ୍ରତ୍ୟେକ ପଦକ୍ଷେପରେ ପ୍ରେରଣା ଓ ପୂଜ୍ୟ ପ୍ରେମାନନ୍ଦ ମହାପାତ୍ରଙ୍କର ସୁଚିନ୍ତିତ ଓ ସମୟୋପଯୋଗୀ ଉପଦେଶ ମୋତେ ଧନ୍ୟ କରିଛି ।

ପ୍ରଭୁ ଏହାକୁ ଗ୍ରହଣ କରି ଆମ୍ଭମାନଙ୍କୁ କୃତାର୍ଥ କରନ୍ତୁ ଏତିକି ତାଙ୍କ ପଦକଞ୍ଜରେ ପ୍ରାର୍ଥନା ।

ଜୟ ଲଡ୍ଡୁବାବା ।

(ସୁର ଭାଇ)



# ମନ୍ଦିର ପରିଛାଙ୍କ କଲମରୁ...





ନବଦୁର୍ଗ ରାଷ୍ଟ୍ରାନ୍ତର୍ଗତ ଶରଣକୁଳ ଗ୍ରାମପଞ୍ଚାୟତ ମଧ୍ୟେ ବିରାଜିତ ଶ୍ରୀ ଶ୍ରୀ ଲଡୁକେଶ ମହେଶଙ୍କ କିମ୍ବଦନ୍ତୀ, ମନ୍ଦିର ନିର୍ମାଣ, ରୀତି ନୀତି ଆଦିକୁ ନେଇ ପ୍ରଭୁ ସଂମ୍ପର୍କୀୟ ତଥ୍ୟରାଜିର ପରିବେଷଣରେ ପରିପୁଷ୍ଟ "ଲଡୁବାବା ବିଳାସ" କାବ୍ୟଟିର ରଚନା ଅତି ଚମତ୍କାର ଭାବେ ହୋଇଛି ଯାହା କି ଜଣେ ଭକ୍ତ ପଢ଼ିଲା ସମୟରେ ଠାକୁରଙ୍କ ପ୍ରତି ମନ ଲାଖି ରହି ଯାଏ । ମୁଁ ସାନଭାଇ ସୁରକୁ ଆଶୀର୍ବାଦ କରୁଛି ଓ ଲଡୁବାବାଙ୍କ ପାଖରେ ପ୍ରାର୍ଥନା କରୁଛି ତାଙ୍କର ଭବିଷ୍ୟତ ଉତ୍ତରୋତ୍ତର ଉନ୍ନତି ହେବା ସଙ୍ଗେ ସଙ୍ଗେ ଚଲାପଥ କୁସୁମିତ ହେଉ ଓ ପ୍ରଭୁ ଶକ୍ତି ଦିଅନ୍ତୁ ତାଙ୍କର କଲମ ସର୍ବଦା ଏହିପରି ଚାଲିଥାଉ ।

ଶ୍ରୀ ତୋଷବନ୍ତ କର ଶର୍ମା

(ଶ୍ରୀ ତୋଷବନ୍ତ କର ଶର୍ମା)

ମନ୍ଦିର ପରିଛା



# ଅନୁଭବର କଥା........



ସୁରଭାଇଙ୍କ ଗବେଷଣା ଲବ୍ଧ "ଲଡୁବାବା ବିଳାସ" କାବ୍ୟ ୩୧ ଅଧ୍ୟାୟରେ ପ୍ରକାଶ ହୋଇଛି । ସୁନ୍ଦର ଓ ନିଖୁଣ ଭାବେ ମହିମାମୟ ଲଡୁବାବାଙ୍କ ଇତିହାସ, ପୁରାଣ ଓ କିମ୍ବଦନ୍ତୀ ବର୍ଣ୍ଣନା କରିଛନ୍ତି । ଏଥିରେ ପୀଠମହାତ୍ମ୍ୟ, ମନ୍ଦିର ନିର୍ମାଣ, ଦୈନିକ ନୀତି, ଯାନିଯାତ୍ରା, ସେବା, ସେବକ, ମନ୍ଦିର ବେଢ଼ାରେ ଦେବଦେବୀ ସହିତ ନୟାଗଡ଼ ରାଜ୍ୟର ବିଭିନ୍ନ ଗ୍ରାମସ୍ଥ ବୈଷ୍ଣବ, ଶୈବ ଓ ଶାକ୍ତ ପୀଠର ବର୍ଣ୍ଣନାକରି ବହୁ ଜ୍ଞାତବ୍ୟ ତଥ୍ୟ ପ୍ରଦାନ କରିଛନ୍ତି । ଦଣ୍ଡ ଠାକୁର(ବାନାୟର)ଙ୍କର ଯାତ୍ରା ଚଢ଼େୟା ଲୀଳା ବର୍ଣ୍ଣନା ପୂର୍ବକ ହଜି ଯାଉଥିବା ପୁରାତନ ସଂସ୍କୃତିକୁ ଲୋକଲୋଚନକୁ ଆଣିଛନ୍ତି ।

ଭକ୍ତ ସୁରଭାଇ ପିଲା ଦିନରୁ ଶ୍ରୀଲଡୁବାବା ଓ ଦଧିବାମନ (ଜଗନ୍ନାଥ)ଙ୍କ ରହସ୍ୟ ଜାଣିବା ପାଇଁ ପ୍ରୟାସ ଜାରି ରଖିଥିଲେ । ଲଡୁବାବାଙ୍କ କୃପାରୁ, **ଲଡୁବାବା ଭଜନମାଳା, ମହିମାମୟ ଲଡୁବାବା, ଲଡୁବାବା ସ୍ତୋତ୍ର ମାଳା, ଲଡୁବାବା ବିଳାସ, ପୁରୁଷୋତ୍ତମ ତତ୍ତ୍ବ(ସିଦ୍ଧାନ୍ତ ଦର୍ପଣ), ନୀଳାଚଳ କ୍ଷେତ୍ର ମହାତ୍ମ୍ୟ (କପିଳ ସଂହିତା)** ସଂପାଦନ କରି ଶ୍ଳୋକର ଅର୍ଥ ନିଜସ୍ୱ ଭାଷାରେ ଓ ନବାକ୍ଷରୀ ଛନ୍ଦରେ ତଥା ଲୋକପ୍ରିୟ ପୌରାଣିକ ରାଗରେ ରଚନା କରି ସର୍ବାଧିକ ତଥ୍ୟ ଓ ତତ୍ତ୍ୱ ଆମମାନଙ୍କ ପାଇଁ ଆଣି ଦେଇଛନ୍ତି ।

ସୁରଭାଇଙ୍କ ସହିତ ମୋର ବହୁ ବର୍ଷର ସମ୍ପର୍କ । ମୁଁ ତାଙ୍କୁ ଅତି ନିକଟରୁ ଯେତିକି ଜାଣିଛି ସେ ଜଣେ ସୁନାମଧନ୍ୟ ଛାତ୍ର ବତ୍ସଳ ଶିକ୍ଷକ ଅଟନ୍ତି । ଏକାଧାରରେ ସେ ଜଣେ କବି, ସମାଜସେବୀ, ଗବେଷକ ଓ ଚରିତ୍ରବାନ୍ ବ୍ୟକ୍ତି ଅଟନ୍ତି । ମୋ ଦ୍ୱାରା ରଚିତ **"ପୁରୁଷୋତ୍ତମ ଶ୍ରୀଜଗନ୍ନାଥ"** ପୁସ୍ତକର ସଂପୂର୍ଣ୍ଣ ଦାୟିତ୍ୱ ସେ ନେଇ ନ ଥିଲେ ମୋ ଭଳି ଜଣେ ବ୍ୟସ୍ତ ମଣିଷ ପକ୍ଷରେ ପୁସ୍ତକ ପ୍ରକାଶ କରିବା ସମ୍ଭବ ହୋଇ ନ ଥାନ୍ତା । ଆମ ରାଜ୍ୟ ତଥା ରାଜ୍ୟ ବାହାରେ ହାଇସ୍କୁଲ କଲେଜ

ଛାତ୍ରଛାତ୍ରୀମାନଙ୍କୁ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରତି ଆକୃଷ୍ଟ କରି ଜଣେ ଉତ୍ତମ ନାଗରୀକ ରୂପେ ଗଢ଼ି ତୋଳିବାକୁ ଚାରଣଗୋଷ୍ଠୀ, ପୁରୀ ଦ୍ୱାରା ଆୟୋଜିତ **"ଶ୍ରୀଜଗନ୍ନାଥ ସଂସ୍କୃତି ଜ୍ଞାନ ପରୀକ୍ଷା"**ର ସେ ପରୀକ୍ଷା ନିୟନ୍ତକ ଅଟନ୍ତି । ତାଙ୍କର ଅକ୍ଳାନ୍ତ ପରିଶ୍ରମ ଦ୍ୱାରାଏହି ମହାନ୍ କାର୍ଯ୍ୟ ସମ୍ଭବ ହୋଇ ପାରିଛି ।

ମୁଁ ତାଙ୍କର ଉତ୍ତରୋତ୍ତର ଉନ୍ନତି ଓ ମଙ୍ଗଳ କାମନା କରୁଛି । ତାଙ୍କର ଏହି ଉତ୍ତମ ପ୍ରୟାସ ଜାରୀ ରଖିବାକୁ ମୁଁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ।

ଗୋବିନ୍ଦ ଚନ୍ଦ୍ର ବେହେରା

(ଗୋବିନ୍ଦ ଚନ୍ଦ୍ର ବେହେରା)

**ସହ ସାଧାରଣ ସମ୍ପାଦକ ଓ ମୁଖ୍ୟ ସଂଯୋଜକ**
**ଶ୍ରୀ ଜଗନ୍ନାଥ ସଂସ୍କୃତି ଜ୍ଞାନ ପରୀକ୍ଷା**
**ଚାରଣଗୋଷ୍ଠୀ, ପୁରୀ**



**ଡକ୍ଟର ପ୍ରେମାନନ୍ଦ ମହାପାତ୍ର,** ଓ.ଇ.ଏସ(୧)
ବିଭାଗ ମୁଖ୍ୟ ଓ ଆସୋସିଏଟ୍ ପ୍ରଫେସର
ଓଡ଼ିଆ ବିଭାଗ,
ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ,
ଭୁବନେଶ୍ୱର



# ଅଭିମତ

ଭାରତବର୍ଷର ଉତ୍କଳ ଭୂଖଣ୍ଡରେ ଅବସ୍ଥାପିତ ନୟାଗଡ଼ ଜିଲ୍ଲାରେ ଶରଣକୁଳ ହେଉଛି ଇତିହାସ ପ୍ରସିଦ୍ଧ ପୁଣ୍ୟପୀଠ । ଶରଣକୁଳଠାରେ ନୟାଗଡ଼ ଜିଲ୍ଲାର ପ୍ରମୁଖ ଶିବ ଲଡୁବାବା ନାମରେ ସୁପ୍ରତିଷ୍ଠିତ । ଅତୀତରେ ନୟାଗଡ଼ ଥିଲା ଓଡ଼ିଶାର ଅନ୍ୟତମ ଗଡ଼ଜାତ ରାଜ୍ୟ । ଏହିଗଡ଼ଜାତ ରାଜ୍ୟରେ ପ୍ରସିଦ୍ଧ ଦ୍ୱାଦଶାର୍ଦ୍ଧ ଶମ୍ଭୁମାନଙ୍କ ମଧ୍ୟରେ ଲଡୁବାବାଙ୍କର ମହିମା ଓ ମହତ୍ୱ ଅନିର୍ବଚନୀୟ । ଲଡୁବାବା **'ଲଡୁକେଶ୍ୱର'** ଏବଂ **'ଲଡୁକେଶ'** ନାମରେ ମଧ୍ୟ ପରିଚିତ । ଲଡୁବାବା ହେଉଛନ୍ତି ରାଜ ପୂଜିତ ଦିଅଁ । ଲଡୁବାବାଙ୍କ ଆବିର୍ଭାବ ସମ୍ପର୍କରେ ମନୋଜ୍ଞ ଜନଶ୍ରୁତି ରହିଛି । ଲଡୁବାବା ହେଉଛନ୍ତି ଉଭୟ ହରି ଓ ହର ।ଏକାମ୍ର କ୍ଷେତ୍ର ପରି ଶୈବକ୍ଷେତ୍ର ଶରଣକୁଳ ହରିହର ପୀଠ ରୂପେ ପୁରାଣ ପ୍ରସିଦ୍ଧ । ମହାପ୍ରଭୁ ଲଡୁବାବା ଅକର୍ମ କର୍ମ ଦାୟକ । ସେ ଦୀନବନ୍ଧୁ, ପରମ କଲ୍ୟାଣମୟ ଠାକୁର । ସେ ମୃତ୍ୟୁଞ୍ଜୟ, ମହାକାଳ, ପିନାକପାଣି, ନୃତ୍ୟପ୍ରିୟ, ରାମପ୍ରିୟ, ଭକ୍ତ ବତ୍ସଳ ସଦାଶିବ । ସେ ହେଉଛନ୍ତି କରୁଣାବତାର, ଆଶୁତୋଷ, ମହିମାବନ୍ତ ଠାକୁର । ଯୁଗେ ଯୁଗେ ଭକ୍ତ ଜନ ଏହି ଲଡୁବାବାଙ୍କର ମହିମା ଗାନ କରି, ନାମକୀର୍ତ୍ତନ କରି ନିଜ ଜୀବନର ସାର୍ଥକତା ପ୍ରତିପାଦନ କରିଛନ୍ତି । କାରଣ ଅସାର ସଂସାରରେ **'ଶିବ'** ନାମ ହିଁ ସାର ଅଟେ ।

ନୟାଗଡ଼ ଜିଲ୍ଲାର ଅନେକ କବି ଲଡୁବାବାଙ୍କର ଦିବ୍ୟ ଯଶୋକୀର୍ତ୍ତିକୁ ବାଣୀରୂପ ପ୍ରଦାନ କରିଛନ୍ତି । ସେହି ଯଶସ୍ୱୀ କବିମାନଙ୍କ ମଧ୍ୟରେ ସୁରେଶ ଚନ୍ଦ୍ର ବରାଡ଼ ଓରଫ ସୁର ଭାଇ ଅନ୍ୟତମ । ଶରଣକୁଳ ନିକଟବର୍ତ୍ତୀ ହରିହରପୁର ତାଙ୍କର ଜନ୍ମସ୍ଥାନ । ଏହି ହରିହରପୁର ଗ୍ରାମର

କବି ସତ୍ୟବାଦୀ ସାମନ୍ତରାୟ 'ସୀତା ବିଳାସ' କାବ୍ୟ ରଚନା କରି ଓଡ଼ିଆ କାବ୍ୟ ଜଗତରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି । ସେହି କବି ମାଟିର ଦିବ୍ୟ ବିଭୂତିକୁ ନେଇ ସାହିତ୍ୟ ସାଧକ ସୁରେଶ ଚନ୍ଦ୍ର ବରାଡ଼ ମହାପ୍ରଭୁ ଲଡ୍ଡୁବାବାଙ୍କର ମହନୀୟ ଓ ଦିବ୍ୟ ଚରିତକୁ ଉପଜୀବ୍ୟ କରି ଏକ ତିରିଶି ଗୋଟି ପ୍ରକାଶ(ଅଧ୍ୟାୟ) ସମ୍ବଳିତ "ଲଡ୍ଡୁବାବା ବିଳାସ" କାବ୍ୟ ସର୍ଜନା କରିଛନ୍ତି । ଓଡ଼ିଆ ବିଳାସ କାବ୍ୟ ପରମ୍ପରାରେ ଏହା ଏକ ନୂତନ ସଂଯୋଗ । ରସକୁଲ୍ୟା ରାଗରେ ରଚିତ ଏହି କାବ୍ୟର ମଙ୍ଗଳାଚରଣ ପର୍ବରେ "ବିନାୟକ ଗଣେଶଙ୍କ ସ୍ତୁତି" ସ୍ଥାନିତ ହୋଇଛି । କାବ୍ୟଟି ନିର୍ବିଘ୍ନରେ ପରି ସମାପ୍ତି ହେବା ପାଇଁ ଏବଂ କବିଙ୍କର ଅଜ୍ଞାନତାକୁ ଖଣ୍ଡନ କରିବା ପାଇଁ ଏଠାରେ ଯେଉଁ କାବ୍ୟିକ ନିବେଦନ ରହିଛି, ତାହା ପ୍ରଣିଧାନ ଯୋଗ୍ୟ । କବି ଲେଖିଛନ୍ତି-

"ଏକଦନ୍ତ ତପ୍ତ ସୁବର୍ଣ୍ଣବର୍ଣ୍ଣ
ବିରାଟ ଶରୀର ବଡ଼ ନୟନ
ଲମ୍ବୋଦର ପ୍ରଭୁ ଗଣନାୟକ
ସମସ୍ତ ଅମଙ୍ଗଳ ବିନାଶକ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।"

ଏହା ପରେ ରହିଛି "ଲଡ୍ଡୁବାବାଙ୍କ ସ୍ତୁତି" । ଏହି ସ୍ତୁତିଟି ବେଶ୍ ଭକ୍ତିଭାବାପନ୍ନ । ଚଉତିଶା ରୀତିରେ 'କ' ଠାରୁ 'କ୍ଷ' ଅକ୍ଷର ପର୍ଯ୍ୟନ୍ତ କ୍ରମରେ ଏହା ବିରଚିତ । କବି ଗାଇଛନ୍ତି-

"କୃପାକର ପ୍ରଭୁ ଲଡ୍ଡୁକେଶ୍ୱର
କରଯୋଡ଼ି ପଡୁଅଛି ପୟର
କରୁଣା ନିଧାନ ହେ ଆଶୁତୋଷ
କରିଛ ଶରଣକୁଳରେ ବାସ
କରକୃପାକର୍ମହୀନେ,
କରଣ କାରଣ, କରତା ଆପଣ ହେ,
କର କ୍ଷମା, କ୍ଷମା ଗୁଣେ ।
ଖଟ୍ୱାଙ୍ଗଧର ହରିହର ମୂର୍ତ୍ତି
ଖଣ୍ଡନେ ସମର୍ଥ ଦୀନ ଦୁର୍ଗତି

ଖଣ୍ଡ ମଣ୍ଡଳେ ତୁମ ନାମ ଡାକ
ଖରେ ନାଶ ଶୁଣି ଦୁଃଖୀଙ୍କ ଦୁଃଖ
ଖ୍ୟାତି ରହିଛି ତୁମରି,
ଖଣ୍ଡ ମୋର ତ୍ରାସ, କ୍ଷମ ମୋର ଦୋଷ ହେ,
ଫଣୀ ଶଶଧର ଧାରୀ ।" (ଇତ୍ୟାଦି)

ଏହା ପରେ "ଲଡୁବାବା ବିଳାସ" କାବ୍ୟାରମ୍ଭ ହୋଇଛି । କାବ୍ୟର ପ୍ରଥମ ପ୍ରକାଶରେ ମହାପ୍ରଭୁଙ୍କର 'ଲଡୁବାବା' ନାମ ଧାରଣ ପ୍ରସଙ୍ଗ ବର୍ଣ୍ଣିତ । ଦ୍ୱିତୀୟ ପ୍ରକାଶରେ ପୀଠ ମହିମା ଓ ଶରଣକୁଳର ନାମକରଣ ବର୍ଣ୍ଣନା କରାଯାଇଛି । ତୃତୀୟ ପ୍ରକାଶରେ ଚନ୍ଦ୍ରଙ୍କୁ ଦକ୍ଷ ଓ ବୃହସ୍ପତିଙ୍କର ଅଭିଶାପ ପ୍ରଦାନ, ଚନ୍ଦ୍ରଙ୍କର ଶିବାରାଧନା ନିମନ୍ତେ ଲିଙ୍ଗ ପ୍ରତିଷ୍ଠା ଓ ଅଭିଶାପ ମୋଚନ ପ୍ରସଙ୍ଗ ବର୍ଣ୍ଣିତ । ଚତୁର୍ଥ ପ୍ରକାଶରେ ବିଶ୍ୱାମିତ୍ରଙ୍କର ବଶିଷ୍ଠଙ୍କ ସହ ଶତ୍ରୁତା, ପରାଜୟ, ଶିବାରାଧନା ଓ ବରପ୍ରାପ୍ତି ପ୍ରସଙ୍ଗ ବର୍ଣ୍ଣିତ । ପଞ୍ଚମ ପ୍ରକାଶରେ ରାବଣର କାମନା ଲିଙ୍ଗ ଉତ୍ପାଟନ ପ୍ରଚେଷ୍ଟା ଓ ପରାଭବ ପ୍ରାପ୍ତି ବର୍ଣ୍ଣିତ । ଷଷ୍ଠ ପ୍ରକାଶରେ ବାଣାସୁରର ଚରିତ ଓ କାମନା ଲିଙ୍ଗ ଉତ୍ପାଟନ ପ୍ରଚେଷ୍ଟା ବିଷୟ ରହିଛି । ସପ୍ତମ ପ୍ରକାଶରେ ନକୁଳ କନ୍ଧ ଓ ବାଘ ଚରିତ ଏବଂ ମହେଶ୍ୱରଙ୍କ ଆବିର୍ଭାବ ବିଷୟ ବର୍ଣ୍ଣିତ । ଅଷ୍ଟମ ପ୍ରକାଶରେ କପିଳା ଗାଈ ଚରିତ ଓ ପ୍ରଭୁ ଲଡୁବାବା ନାମ ଧାରଣଏବଂ ନବମ ପ୍ରକାଶରେ ପ୍ରଭୁଙ୍କର କ୍ରମ ପରିପ୍ରକାଶର ପୌରାଣିକ ଓ ଐତିହାସିକ ବିବରଣ ସ୍ଥାନିତ । ଦଶମ ପ୍ରକାଶରେ ଲଡୁବାବାଙ୍କ ମନ୍ଦିର ନିର୍ମାଣ ଶୈଳୀ ଏବଂ ଏକାଦଶ ପ୍ରକାଶରେ ମନ୍ଦିର ନିର୍ମାଣ ସମୟ ଓ ତତ୍‌ସମ୍ପର୍କିତ ମତବାଦ ବର୍ଣ୍ଣିତ । ଦ୍ୱାଦଶ ପ୍ରକାଶରେ ରହିଛି ଶିବଙ୍କର ଲିଙ୍ଗ ରୂପ ଧାରଣର କାରଣ ଓ ଲଡୁବାବାଙ୍କ ଲିଙ୍ଗର ଗଠନ ଶୈଳୀ ବର୍ଣ୍ଣନ । ତ୍ରୟୋଦଶ ପ୍ରକାଶରେ ରହିଛି ଯାତ୍ରା ଓ ପର୍ବ ପର୍ବାଣି ଏବଂ ଚତୁର୍ଦ୍ଦଶ ପ୍ରକାଶରେ ରହିଛି ଯାତ୍ରାଙ୍ଗୀ· ଦିବସର ତିଥି ଓ ନୀତି । ପଞ୍ଚଦଶ ପ୍ରକାଶର ବିଷୟ ହେଉଛି ଭୋଗପ୍ରସାଦ ଓ ସେଗୁଡ଼ିକର ପ୍ରସ୍ତୁତ ପ୍ରଣାଳୀ ।

ଷୋଡଶ ପ୍ରକାଶରେ ରହିଛି ସେବାୟତମାନଙ୍କର କାର୍ଯ୍ୟାବଳୀ ଓ ସେବାପୂଜା । ସପ୍ତଦଶ ପ୍ରକାଶରେ ରହିଛି ଠାକୁରଙ୍କର ଦୈନିକ ନୀତି । ଅଷ୍ଟାଦଶ ପ୍ରକାଶରେ ଲଡୁବାବା ଓ ପାର୍ଶ୍ୱଦେବତାଙ୍କ ବେଶ ବର୍ଣ୍ଣନା ସ୍ଥାନିତ । ଊନବିଂଶ ପ୍ରକାଶ ହେଉଛି ରୁଦ୍ରାଭିଷେକ, ଜଳାଭିଷେକ ଓ ବିଲ୍ୱପତ୍ର ଅଭିଷେକ ପ୍ରସଙ୍ଗ । ପାର୍ଶ୍ୱଦେବତା ଓ ସେମାନଙ୍କର ଦର୍ଶନ କ୍ରମ ହେଉଛି ବିଂଶ

ପ୍ରକାଶର ଉପଜୀବ୍ୟ । ଏକବିଂଶ ପ୍ରକାଶରେ ରହିଛି ଗୁହାରିଆ ଚରିତ ଏବଂ ଦ୍ୱାବିଂଶ ପ୍ରକାଶରେ ରହିଛି ଶିବ ପାର୍ବତୀଙ୍କର ବ୍ରହ୍ମାଦ୍ରି ଦର୍ଶନ ଓ ବନ ବିହାର । ତ୍ରୟୋବିଂଶ ପ୍ରକାଶରେ ରହିଛି ଚଢ଼େୟାର ସର୍ପାଘାତ ଓ ଜୀବନ ଲାଭ । ଚତୁର୍ବିଂଶ  ପ୍ରକାଶରେ ମହେଶ୍ୱର ମିଶ୍ର ଚରିତ ଏବଂ ପଞ୍ଚବିଂଶ ପ୍ରକାଶରେ ପ୍ରଭୁଙ୍କ କୃପାରୁ ସତାର ଖାଁଙ୍କ ପୁତ୍ରର ରୋଗରୁ ମୁକ୍ତି ପ୍ରସଙ୍ଗ ବର୍ଣ୍ଣିତ । ଷଡ଼ବିଂଶ ପ୍ରକାଶରେ ରହିଛି ବେଢ଼ା ପରିକ୍ରମା ଏବଂ ସପ୍ତବିଂଶ ପ୍ରକାଶରେ ରହିଛି ଲଡୁବାବାଙ୍କ ବିଜେ ପ୍ରତିମାଙ୍କର ପରିକ୍ରମା ନୀତି । ମହାଦୀପ ଓ ଶାଢ଼ୀ ବାହାରିବା ନୀତି ଅଷ୍ଟବିଂଶ ପ୍ରକାଶରେ ବର୍ଣ୍ଣିତ । ଊନତ୍ରିଂଶ ପ୍ରକାଶରେ ଲଡୁବାବାଙ୍କୁ ଘେରି ରହିଥିବା ପାର୍ଶ୍ୱବର୍ତ୍ତୀ ଶିବମନ୍ଦିର ଏବଂ ତ୍ରିଂଶ ପ୍ରକାଶରେ ରହିଛି ଅନ୍ୟାନ୍ୟ ଦେବଦେବୀଙ୍କର ବର୍ଣ୍ଣନା । ଏକତ୍ରିଂଶ ତଥା ଶେଷ ତମ ପ୍ରକାଶରେ ରହିଛି ରହସ୍ୟମୟ ଲଡୁବାବାଙ୍କର ରହସ୍ୟ ବର୍ଣ୍ଣନା ପ୍ରସଙ୍ଗ ।

**"ଲଡୁବାବାବିଳାସ"** କାବ୍ୟଟି ଏକ ତଥ୍ୟଭିତ୍ତିକ କାବ୍ୟ । ଏହି କାବ୍ୟରେ କବିଙ୍କର ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀ, ପୌରାଣିକ ଜ୍ଞାନ, ଅଧ୍ୟୟନଶୀଳତା ଏବଂ କବିତ୍ୱ ବିଳସିତ । ଏହା ତଥ୍ୟଭିତ୍ତିକ ହେଲେ ମଧ୍ୟ ଏହାର କବିତ୍ୱ ବାଧାପ୍ରାପ୍ତ ନୁହେଁ । ପାଠକଟିଏ ଏହି କାବ୍ୟରୁ ଲଡୁବାବାଙ୍କ ସମ୍ପର୍କିତ ସବିଶେଷ ତଥ୍ୟ ସମ୍ପର୍କରେ ଅବଗତ ହୋଇ ପାରିବ । ଲଡୁବାବାଙ୍କ ସମ୍ପର୍କରେ ଏପରି କାବ୍ୟ ପୂର୍ବରୁ କେବେ ରଚିତ ହୋଇ ନାହିଁ । ଏହା ସୁରଭାଇଙ୍କ ସାଧୁ ଉଦ୍ୟମର ମଧୁର ଫଳଶ୍ରୁତି । ଶିବ ପ୍ରିୟ, ଶିବପ୍ରାଣ ସୁରଭାଇ ଏହି କାବ୍ୟ ମାଧ୍ୟମରେ ଲଡୁକେଶ ମହେଶଙ୍କର ଦିବ୍ୟ ଚରିତାମୃତ ବର୍ଣ୍ଣନା କରି ସଫଳତା ଲାଭ କରିଛନ୍ତି । କବି ସୁରଭାଇ ନୟାଗଡ଼ ଜିଲ୍ଲାର କବି ପରିବାରର ଜଣେ ବିଜ୍ଞ ସଦସ୍ୟ । ମହାପ୍ରଭୁ ଲଡୁକେଶ୍ୱର ତାଙ୍କୁ ସଦୟ ଦୃଷ୍ଟିରେ  ଚାହିଁଥାନ୍ତୁ, ଏତିକି କାମନା ।



"ଓଁ ନମଃ ଶିବାୟ"

"ଓଁ ଲଡୁକେଶ୍ୱରାୟ ନମଃ"

ପ୍ରେମାନନ୍ଦ ମହାପାତ୍ର

ପ୍ରେମାନନ୍ଦ ମହାପାତ୍ର

ତା।୨୮।୮।୨୦୨୦

## ସୂଚୀପତ୍ର

## ସୂଚୀପତ୍ର

# ସୂଚୀପତ୍ର

## ସୂଚୀପତ୍ର





# ମଙ୍ଗଳା ଚରଣ

## ବିଘ୍ନନାଶକ ଗଣେଶଙ୍କ ସ୍ତୁତି

(ରସକୁଲ୍ୟା-ବୀଣାକାର ବୃତ୍ତେ)

ଏକଦନ୍ତ ତପ୍ତ ସୁବର୍ଣ୍ଣ ବର୍ଣ୍ଣ
ବିରାଟ ଶରୀର ବଡ଼ ନୟନ
ଲମ୍ବୋଦର ପ୍ରଭୁ ଗଣନାୟକ
ସମସ୍ତ ଅମଙ୍ଗଳ ବିନାଶକ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୧ ।

ମୃଗଚର୍ମଧାରୀ ଗଣଙ୍କ ଈଶ
ସର୍ପ ଉପବିତ ସ୍କନ୍ଧେ ପ୍ରକାଶ
ବାଳ ନିଶାକରେ ଶୋହେ ମସ୍ତକ
ଭକ୍ତଜନେ ସର୍ବସିଦ୍ଧି ଦାୟକ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୨ ।

ଭକ୍ତ ପ୍ରିୟ ପ୍ରଭୁ ଭକ୍ତ ରକ୍ଷକ
ଲଡୁ ପ୍ରିୟ ପାଶାଙ୍କୁଶ ଧାରକ
ଅମ୍ବିକା ହୃଦୟାନନ୍ଦ ଦାୟକ
ଗଜାନନ ପ୍ରଭୁ ଗର୍ବ ନାଶକ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୩ ।

ଚାରୁସୁନ୍ଦର ମାଳା ବିଭୂଷିତ
ଜ୍ଞାନ ଶକ୍ତି ପ୍ରଭୁ ତୁମ ଅମିତ
କାମଦେବ ପ୍ରାୟ ରୂପଧାରକ
ଭକ୍ତାର୍ତ୍ତିନାଶନ ହେ ବିନାୟକ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୪ ।

ଅଗ୍ର ପୂଜ୍ୟ ତୁମେ ଗଜବଦନ
ବିସ୍ତୀର୍ଣ୍ଣ କର୍ଣ୍ଣ କରିଛ ଧାରଣ
ସିଦ୍ଧିରିଦ୍ଧିହୃଦ ପ୍ରିୟ ନାୟକ
ବିଦ୍ୟାଦାତା ପ୍ରଭୁ ଶୁଭଦାୟକ ।
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୫ ।

ମୁଷିକ ବାହନ ଦେବ ବନ୍ଦିତ
ବଳବାନ ଯୋଦ୍ଧା ରୂପେ ବିଖ୍ୟାତ
ବକ୍ରତୁଣ୍ଡ ତୁମ ମନ ମୋହକ
ବିଶ୍ୱରୂପୀ ତୁମେ ଗଣନାୟକ ।
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୬ ।

ଯକ୍ଷ ରକ୍ଷ ଗନ୍ଧର୍ବ ବିଦ୍ୟାଧର
ବନ୍ଦନା କରନ୍ତି ତୁମ ପୟର
ଜ୍ଞାନ ବୁଦ୍ଧି ତୁମେ ପ୍ରଥମ ପୂଜ୍ୟ
ଲମ୍ବୋଦର ପ୍ରଭୁ ଗୌରୀ ଆତ୍ମଜ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୭ ।

ଦେବତା ପ୍ରିୟ ହେ ଶଙ୍କର ରୂପ
ସର୍ବଜନ ପ୍ରିୟ ବିଷ୍ଣୁ ସ୍ୱରୂପ
ହେରମ୍ବ ପ୍ରଭୁ ପାର୍ବତୀ ନନ୍ଦନ
ଦ୍ୱୈମାତୁର ତୁମେ ଶୋକ ନାଶନ
ବିଘ୍ନହର୍ତ୍ତା ବୁଦ୍ଧିଦାତା,
ବିଘ୍ନ ମୋର ହର, ନମୁଛି ପୟର,
ଖଣ୍ଡ ପ୍ରଭୁ ଅଜ୍ଞାନତା ।୮ ।



# ଲଡୁବାବାଙ୍କ ସ୍ତୁତି

କୃପାକର ପ୍ରଭୁ ଲଡୁକେଶ୍ୱର
କର ଯୋଡ଼ି ପଡୁଅଛି ପୟର
କରୁଣା ନିଧାନ ହେ ଆଶୁତୋଷ
କରିଛ ଶରଣକୁଳରେ ବାସ
କର କୃପା କର୍ମହୀନେ,
କରଣକାରଣ, କରତା ଆପଣ ହେ,
କର କ୍ଷମା କ୍ଷମା ଗୁଣେ ।୧।
ଖଟ୍ୱାଙ୍ଗଧର ହରିହର ମୂର୍ତ୍ତି
ଖଣ୍ଡନେ ସମର୍ଥ ଦୀନ ଦୁର୍ଗତି
ଖଣ୍ଡ ମଣ୍ଡଳେ ତୁମ ନାମ ଡାକ
ଖରେ ନାଶ ଶୁଣି ଦୁଃଖିଙ୍କ ଦୁଃଖ
ଖ୍ୟାତି ରହିଛି ତୁମରି,
ଖଣ୍ଡ ମୋର ତ୍ରାସ, କ୍ଷମ ମୋର ଦୋଷ ହେ,
ଫଣୀ ଶଶଧରଧାରୀ ।୨।
ଗଙ୍ଗାଧର ପ୍ରଭୁ ଗଉରୀ ଈଶ
ଗଉଡ଼ ଲଡୁଆ ହେତୁ ପ୍ରକାଶ
ଗୋପନେ କାଳୀ ଗାଈ ଦିଏ କ୍ଷୀର
ଗୁପତ ଖୋଲିଲା ଏକ ଦିନର
ଗଲା କଥା ରାଜା କାନ,
ମନ୍ଦିର ଗଢ଼ିଣ, ପୂଜିଲା ଖଞ୍ଜିଣ ହେ
ସେବାସୀ ପାଳିଆ ଧନ ।୩।
ଘମଣ୍ଡ କଲା ସେ ସତାର ଖାଆଁ
ଘର ଭଣ୍ଡାର ସେ ଖୋଲି ଛାନିଆଁ
ଘଉଡ଼ାଇ ଦେଲ ପେଷିଣ ନାଗ
ଘଡ଼ିକରେ ପାଦେ ନମିଲା ଆଗ
ଘୋଷିଲା ନାମ ତୁମରି,
ଘେନାକର ଦୁଃଖ, ଘୋଡ଼ାଇଣ ରଖ ହେ,
ଘଣ୍ଟ ପ୍ରଭୁ ଜଟାଧାରୀ ।୪।

ଉମାପତି ରମାପତି ଈଶ୍ୱର
ଉଭୟ ରୂପରେ ପୂଜ୍ୟ ଏଠାର
ଉତ୍ତୀର୍ଣ୍ଣ ହୋଇଲେ ଧ୍ୟାନ ନିଷ୍ଠାରେ
ଉଠେ ଗୁହାରିଆ ତୋ ପ୍ରସାଦରେ
ଉଦୟ ଭାଗ୍ୟତା ହୁଏ,
ଊଣା ନ କରିଲେ, ଉତ୍ସାହେ ପୂଜିଲେ ହେ,
ଉତ୍ତମ ଗତିକୁ ପାଏ ।୫।
ଚାରିଟା ରାତିରୁ ଖୋଲେ ମନ୍ଦିର
ଚୋରା ଦ୍ୱାରେ ଯାନ୍ତି ସେବାୟତ ତୋର
ଚରଣ ଧୋଇଣ ମାଳି ସେବକ
ଚଞ୍ଚଳେ ଉଠ ହେ ଛାଡ଼ିଲେ ଡାକ
ଚନ୍ଦନ ନାମ କରାଳ,
ଚାଣ୍ଡେ ଅବକାଶ, ନୀତି ହୁଏ ଶେଷ ହେ,
ଆଗେ ଚଢ଼ା ହୁଏ ଜଳ ।୬।
ଛତିଶି ପାଟକ ପାଦେ ଖଟନ୍ତି
ଛିଡ଼ଇ ଦୟା ଥିଲେ ଭୟ ଭ୍ରାନ୍ତି
ଛାମୁରେ ଜଣାଏ ମାଳି ସେବକ
ଛାଡ଼େ ପାପ ଭକତର ଯେତକ
ଛବି ନିର୍ମଳ ପବିତ୍ର,
ଛନକା ପଶଇ, ଛାତିରେ ଯମର ହେ,
ଅଭୟ ପାଏ ଭକତ ।୭।
ଜଟାରେ ଧରିଅଛ ଗଙ୍ଗା ମାତା
ଜଟାଧର ଉତ୍ତରେ ଛନ୍ତି ମାତା
ଜଗନ୍ନାଥ ଛନ୍ତି ତାଙ୍କ ପାଖକୁ
ଜପ କଲେ ନାମ ନାଶ ଦୁଃଖକୁ
ଜନ୍ମଜନ୍ମ ପାପ ରାଶି,
ଜଳାଇ ଭକ୍ତର, ଯତନେ କୋଳର ହେ,
ଦିଅ ପୌତ୍ର କନ୍ୟା ଶିଶି ।୮।
ଝଡ଼ ବତାସର ରୌଦ୍ର ରୂପରେ
ଝରଣାର କୁଳୁକୁଳୁ ନାଦରେ
ଝଙ୍କାବର ଗଛ ଛାଇର ତଳେ
ଝଞ୍ଜା ପବନର କଷ୍ଟ ଭିତରେ
ଝରଇ କରୁଣା ତୁମ,
ଝରାଶେଫାଳିର, ଝରୁଥିବା ଲୁହ ହେ,
ଝାଡ଼ଣେ ତୁମେ ସକ୍ଷମ ।୯।

ନ ଥିଲା ମନ୍ଦିର ନ ଥିଲା ବସ୍ତି
ନିଘଞ୍ଚ କାନନ ଥିଲା ଏ ଅତି
ନଦୀ କୁସୁମୀ ପାଶେ ଥିଲ ରହି
ନଟି ଗିଲ ଲତା ଭିତରେ ତହିଁ
ନ ମାନି ବରଷା ଝଡ଼ି
ନ ଦେଇଣ ଘରେ, ନ ମାନିଣ ଦିଏ ହେ,
ନିତ୍ୟ କ୍ଷୀର କାଳି ଗାଈ ।୧୦।
ଟଙ୍କଧର ପ୍ରଭୁ ହେ ଲଡୁବାବା
ଟାଣେ ଶରଣକୁ ନେ ହୋଇ ଉଭା
ଟଭା ଓ ଲହୁଣୀ ଘସା ପାଉଛ
ଟେରାରେ ରାବିଡ଼ି ପଣା ଖାଉଛ
ଟାଳି ଗୁହାରିଆ କଷ୍ଟ
ଟେକ ଅଛ ରଖି, ଟମକ ବାଜୁଛି ହେ,
ଟାଣେ କରୁଅଛ ନଷ୍ଟ ।୧୧।
ଠିକେ କେ ବର୍ଣ୍ଣିବ ତୁମ ମହିମା
ଠାଣି ତୁମର ଯୋଗୀ ମନ ଜିଣା
ଠାଆ ଲାଗି ହୁଏ ଦିନକୁ ତିନି
ଠାକୁର ହେ ତୁମ ମନକୁ ଜାଣି
ଠକ ନା ଭକ୍ତଜନରେ
ଠଣାରୁ ଉଦ୍ଧର, ଜନ୍ମ ମରଣର ହେ,
ଠିଆ ମୁଁ ତୁମ ଦୁଆରେ ।୧୨।
ଡଉଲ ଡାଉଲ ସଂସାର ରୂପ
ଡହ ଡହ ଜାଳେ ତାହାର ତାପ
ଡମ୍ବରୁଧର ଡରାଉଛି କାଳ
ଡାକୁଛି ତୁମ୍ଭଙ୍କୁ ହୋଇ ଆକୁଳ
ଡକା ମହାଦେବ ଶୁଣ
ଡାକିନୀ ଇନ୍ଦ୍ରିୟ, ଡରରେ ଅଥୟ ହେ,
ତ୍ରିଶୂଳ ପ୍ରହାରେ ହାଣ ।୧୩।
ଢାଳି ଭକ୍ତ ଲୁହ ତୁମ ନାମରେ
ଢାଳେ ଯେବେ ଜଳ ତୁମ ଉପରେ
ଢଳେ ଦୁଃଖ ଲେଖା ଯା କପାଳରେ
ଢକା ବାଜେ ନାମ ତୁମ ସଂସାରେ
ଢୋକେ ପାଦୁକ ତୁମର
ଢେଣ୍ଢୁରା ବାଜଇ, ପାପ ଦିଏ ଧୋଇ ହେ,
ଯେତେକ ଅଛି ଭକ୍ତର ।୧୪।

ନରପତି ରଣପୁର ରାଜ୍ୟର
ନୂଆ କରି ଗଢ଼ିଥିଲେ ମନ୍ଦିର
ନୟାଗଡ଼ ରଜା ତାଙ୍କୁ ତଡ଼ିଲେ
ନବଦୂର୍ଗ ରାଜ୍ୟ ପ୍ରଭୁ ବୋଲିଲେ
ନୂଆ ନୂଆ ଖଞ୍ଜା କଲେ,
ନୂଆ ନୂଆ ଯାତ୍ରା, ନୂଆ ଉପଯାତ୍ରା ହେ,
ନୂଆ କରି ଆରମ୍ଭିଲେ ।୧୫।
ତାରଣ କାରଣ ପ୍ରଭୁ ତ୍ରିନେତ୍ର
ତିରଣ ଦେଇ ଡାକିଲେ ଭକତ
ତତ୍‌କ୍ଷଣେ ଶୁଣି ଡାକ ତାହାର
ତ୍ରୟ ତାପରୁ କର ହେ ଉଦ୍ଧାର
ତୁମ ସିଂହ ଦ୍ୱାରେ ଆସି,
ତିରଣ ନ ନେଇ, ଅଣ୍ଟ ଜିହ୍ୱା ତହିଁ ହେ,
ତୋଟି ଯେ କାଟେ ବିଶ୍ୱାସୀ ।୧୬।
ଥୟ ଧରୁ ନାହିଁ ମନ ମୋହର
ଥରେ ଶୁଣ ପ୍ରଭୁ ଉମାଶଙ୍କର
ଥକି ଗଲିଣି ସଂସାର ଦାଣ୍ଡରେ
ଥୟ ପ୍ରାଣ ହାରିବି ତୋ ଦୁଆରେ
ଥଳକୂଳ ପାଉ ନାହିଁ,
ଥରେ ମୋ ହୃଦୟ, ହୁଅନ୍ତୁ ସଦୟ ହେ,
ଦେଖି ମୋ ସ୍ଥିତିକୁ ଚାହିଁ ।୧୭।
ଦାମିନୀ ପରାୟେ ମୋ ଭାଗ୍ୟେ ସୁଖ
ଦଣ୍ଡୁଛି ଅହର୍ନିଶ ଦେଖ ଦୁଃଖ
ଦୟା ସାଗର ହରିହର ମୂର୍ତ୍ତି
ଦିଅଇ ସେବାସୀ ତୁଳସୀ ନିତି
ଦିଏ ବେଲପତ୍ର ପୁଣି,
ଦୟିନି ମୋ ଶୁଣି, ଦୁର୍ଭାଗ୍ୟକୁ ହାଣି ହେ,
ଦିଅ ଫଳ ମନ ଜାଣି ।୧୮।
ଧନ ଗର୍ବେ ଅନ୍ଧ କଳି ମଣିଷ
ଧ୍ୟାନ ନାହିଁ କାଳ କହୁଛି କିସ
ଧାୟେ ଦିନରାତି ଇନ୍ଦ୍ରିୟ ସୁଖ
ଧର୍ମକର୍ମ ପ୍ରତି ହୋଇ ବିମୁଖ
ଧରା ଧାମେ ବାବା ଏକା,
ଧରି ତୁମ ନାମ, ହରାଇବି ଯମ ହେ,
ଧୃତିରେ ନାହିଁ ମୋ ଦକା ।୧୯।

ନଟରାଜ ବସି ନବ ଦୁର୍ଗରେ
ନାହିଁ ବାଛବିଚାର ତୁମଠାରେ
ନାରିକେଳ କଦଳୀ ଭୋଗ ଦେଇ
ନୀରେ କ୍ଷୀରେ ଅଭିଷେକ କରାଇ
ନିଏ ଭକ୍ତ ତୁମ ଚିତ୍ତ,
ନୟାଗଡ଼ ଈଶ, ନିଷ୍ଠାରେ ସନ୍ତୋଷ ହେ,
ନଇଁ ଡାକିଲେ ଭକତ ।୨୦।
ପଣ୍ଡା ପଢ଼ିଆରୀ ପାଳିଆମାଳି
ପାଇ ସେବା ମୂଳ କରନ୍ତି ପାଳି
ପାହାନ୍ତାରୁ ହୁଏ ରାତି ଦଶଟା
ପାଞ୍ଚ ଅବକାଶ ଧୂପ ତିନିଟା
ପୁଡ଼ାଭୋଗଟି ଅନନ୍ୟ,
ପୁରୀ ପଣା କ୍ଷୀରି, ଡ଼ାଲି ତରକାରୀ ହେ,
ଗଜା କଦମ୍ବାରେ ମନ ।୨୧।
ଫଣୀଧାରୀ ପ୍ରଭୁ ଭଣ୍ଡାର ତଳେ
ଫଳ ଦେଉଛ ବସି ଅବହେଳେ
ଫଟା କପାଳ ଅଟଇ ମୋହର
ଫନ୍ଦାରେ ପଡ଼ିଛି ଉଦ୍ଧାର କର
ଫେଡ଼ିବ ପ୍ରଭୁ ଦୁଃଖ କି ?
ଫଗୁଣମାସରେ, ଜାଗରରାତିରେହେ,
ଫୁଲ ମଣ୍ଡିବି କେତକୀ ।୨୨।
ବୃଷଭ ବାହନ କୈଳାସବାସୀ
ବସିଛ ଶରଣକୁଳରେ ଆସି
ବିଶ୍ୱାସେ ଭକ୍ତ ମାନସିକ କରେ
ବିଖ୍ୟାତ ମାନସିକ ପୂରଣରେ
ବାନାଉଡ଼େ ଫରଫର,
ବଂଚିତ କରନି, ଶୁଣିଣ ଦୟିନୀ ହେ,
ବର ଦିଅ ମହେଶ୍ୱର ।୨୩।
ଭକ୍ତର ଦାସ ତୁମ୍ଭେ ପଶୁପତି
ଭକତ ଡାକିଲେ ଉଠ ଝଟତି
ଭୟ କରେ ମାର କୁମାର ପିତା
ଭସ୍ମ କଲ ତାରେ ଜଗତ ପିତା
ଭଜଇ ଯେ ପଞ୍ଚାକ୍ଷର,
ଭାଙ୍ଗିଦିଅ ତା'ର, ଜନ୍ମ ମରଣର ହେ,
ଭୟଙ୍କର ଯେ ଚକର ।୨୪।

ମନ୍ଦିର ତୁମର ବିଶେ ସୁନ୍ଦର
ମୋହି ନିଏ ମନ ବେଢ଼ା ଠାକୁର
ମହନ ବାଢ଼େ କିମ୍ବଦନ୍ତୀ ଚିତ୍ର
ମୁଖଶାଳା ବାଢ଼େ ଯୋଗ ବିଚିତ୍ର
ମହାଯୋଗୀ ଭୋଗୀ ସାଜି,
ମହେଶ୍ୱର ପ୍ରଭୁ, ମନ ଜାଣି ସବୁ ହେ,
ମହାରାଜା ଛନ୍ତି ଖଞ୍ଜି ।୨୫।

ଯତି ଈଶ ପ୍ରଭୁ ପରମେଶ୍ୱର
ଯମ ନ ଆସଇ ଡରେ ଏଠାର
ଯିଏ ଡାକି ଭୋଳା ପାର୍ବତି ପତି
ଯାଇ ଜଳଶାୟୀ କରଇ ନିତି
ଯଶ ତାହାର ବଢ଼ଇ,
ଯେଉଁ କାର୍ଯ୍ୟେ ହାତ, ଯେବେ ଦିଏ ସେତ ହେ,
ଜୟ ଅବଶ୍ୟ ହୁଅଇ ।୨୬।

ରମଣୀୟ ପୀଠ ତୋହର ଏହି
ରଖି ମାନସିକ ପୂଜିଲେ ଯାଇ
ରଖୁ ତୁ ଶରଣ ହରୁ ତା ଦୁଃଖ
ରହିଛି ସୁନାମ ହେ ପଞ୍ଚମୁଖ
ରଖିଛୁ ଭକ୍ତର ଟେକ,
ରହି ମନ୍ଦିରରେ, ରହିଣ ନିଷ୍ଠାରେ ହେ,
ରଟେ ଯେ ନାମ ତୋହର ।୨୭।

ଲକ୍ଷ ସଂଖ୍ୟାରେ କରିଥିଲେ ପାପ
ଲୀନ ହୁଏ କଲେ ତୋ ନାମ ଜପ
ଲକ୍ଷ୍ୟକରି ପାଦପଦ୍ମକୁ ତୋର
ଲକ୍ଷେ ବିଲ୍ୱପତ୍ର ଚଢ଼ାଇ ଶିର
ନୁଆଇଁ ମଥା ଭକ୍ତିରେ,
ଲକ୍ଷ ଲକ୍ଷ ଜନ୍ମ, ଲୀନ ହୁଏ କର୍ମ ହେ,
ଲେଖା ଯାହା କପାଳରେ ।୨୮।

ବିତରୁଛ ପ୍ରଭୁ ତୁମେ ଆଶିଷ
ବୋଲାଇ ଏଠି ନାମ ନକୁଳୀଶ
ବିହି ବିଧାନକୁ କରୁଛ ଆନ
ବନ୍ଧନ ଫେଡଉଛ ପଞ୍ଚ ଆନନ
ବିଟପୀ ପ୍ରାୟ ଏ ମନ,
ବାନ୍ଧିହୋଇ ରହୁ, ବଳେ ମହାବାହୁ ହେ,
ବର ଦିଅ ହୀନ ଜନ ।୨୯।

ଶରଣକୁଳରେ ତୁମ ଆସ୍ଥାନ
ଶରଣ ଦିଅ ଯେତେ ଅଶରଣ
ଶମନର ଦାଉ କର ଶମନ
ଶ୍ମଶାନବାସୀ କନ୍ଦର୍ପ ମର୍ଦ୍ଦନ
ଶିବ ଯେ ସତ୍ୟସୁନ୍ଦର,
ଶକ୍ତି ତୁମେ ଦିଅ, ଶାନ୍ତି ତୁମେ ଦିଅ ହେ,
ଶିର ରହୁ ତୋ ପୟର ।୩୦।
ଷଡ଼ାନନ ପିତା ଗଉରୀ ପତି
ଷଣ୍ଢ ପରେ ବସି ବୁଲୁଛ ନିତି
ଷଡ଼୍‌ବୈରୀ ମୋତେ ଦିଅନ୍ତି କଷ୍ଟ
ଷଡ଼ାକ୍ଷର ମନ୍ତ୍ର ତୁମ ପ୍ରକୃଷ୍ଟ
ଷୋଳପଣ ସତଏହି,
ଷୋଡ଼ଶୋପଚାରେ, ଷୋଳ ସୋମବାରେ ହେ,
ସମ୍ଭାଳ ପୂଜିବି ଯାଇ ।୩୧।
ସତ୍ୟ ଶିବ ସୁନ୍ଦର ଭୁତେଶ୍ୱର
ସବୁ ଦେଇ ପରେ ତୁମେ ଫକୀର
ସଂସାର ତ୍ୟାଗୀ ସଂସାରର ପରେ
ସଂସାର ସାଧୁଛି ଦାଉ ମୋ ପରେ
ସାଧନା ଦିଅ ବତାଇ,
ସାଧିଲେ ଯେପରି, ସଂସାରୀ ମୋ ପରି ହେ,
ସହିବ ସଂସାର ତାତି ।୩୨।
ହର ମୋର ଦୁଃଖ କର ହରଣ
ହରିହର ରୂପ ପ୍ରଭୁ ଆପଣ
ହଲୁଛି ମୋ ସ୍ଥିତି ପାରେ ନା ସହି
ହୋ ହଲ୍ଲା ଜୀବନ ମୋହରଏହି
ହଳାହଳ ପରି ଲାଗେ,
ହାତ ଯୋଡ଼ି କରି, ହେ ଶମ୍ଭୁ ତୁମରି ହେ,
ହୋଇ ଅଛି ଠିଆ ଆଗେ ।୩୩।
କ୍ଷମାର ସାଗର ହେ ଲଡୁବାବା
କ୍ଷମି ଉଦ୍ଧର କି କହିବି ଅବା
କ୍ଷିତିରେ ନାହିଁକେ ଦୁଃଖୀ ମୋ ପରି
କ୍ଷର କୁ ମଣିଛି ଅକ୍ଷର ପରି
କ୍ଷତି ଲାଭ ଜ୍ଞାନ ହୀନ,
କ୍ଷୟିଷ୍ଣୁ ଶରୀର, କ୍ଷୟ ପାଏ ମୋର ହେ,
କ୍ଷେମ ସୁରେଶର ଘେନ ।୩୪।

କରୁଅଛି ପ୍ରଭୁ ପାଦେ ପ୍ରଣତି
ଭରିଦିଅ ମୋର ହୃଦେ ଶକତି
ଲେଖିବାକୁ ଲଡ୍ଡୁବାବା ବିଳାସ
ତୁମରି କଥା କାହାଣୀ ବିଶେଷ
କୃପାକର ମହାଦେବ,
ଯିବ ଅପସରି, ଅଜ୍ଞତା ମୋହରି ହେ,
ବାନା ତୁମର ଉଡ଼ିବ ।୩୫।
ହରିହରପୁର ଶରଣକୁଳେ
ନବଦୂର୍ଗ ଜିଲ୍ଲା ରାଜ୍ୟ ଉତ୍କଳେ
ଖଣ୍ଡାୟତ ଚଷାକୁଳରେ ଜନ୍ମ
ପିତା ଗୋବିନ୍ଦ ପଦ୍ମା ମାତା ନାମ
କର୍ମରେ ଶିକ୍ଷକତା,
ଲଡ୍ଡୁବାବାଙ୍କର, ଅଭୟ ପୟର ହେ,
କରୁଅଛି ସଦା ଚିନ୍ତା ।୩୬।
ବଢ଼ିଛି ବ୍ରାହ୍ମଣୀ ଦେଈଙ୍କ କୋଳେ
ଜାଣିଛି ଦୁଇ ଦିଅଁ ଅବହେଳେ
ଦଧିବାମନ ଓ ଲଡ୍ଡୁକେଶ୍ୱର
ଏମାନେ ମୋହର ହୃଦୟେଶ୍ୱର
ଜଗନ୍ନାଥ ମୋ ଦର୍ଶନ,
ତାଙ୍କରି ସ୍ମରଣ, ତାଙ୍କରି ମନନ,
କରେ ମୁହିଁ ରାତି ଦିନ ।୩୭।
ସତ୍ୟବାଦୀ ସାମନ୍ତରା ଯେ କବି
ସୀତା ବିଳାସ କାବ୍ୟ ରାଜ୍ୟେ ରବି
ତାଙ୍କରି ଗ୍ରାମରେ ଜନମ ମୋର
ଦଧିବାମନ ବିଜେ ଯେ ଗ୍ରାମର
କୁସୁମୀ ନଦୀର କୂଳେ,
ଆଶ୍ରୟେ ତାଙ୍କର, ଜୀବନ ମୋହର,
ସଦା ତାଙ୍କୁ ମନେ ଭାଳେ ।୩୮।
ଖଲି ବରାଡ଼୍ ଜ୍ୟେଷ୍ଠ ପିତା ମୋର
ବ୍ରାହ୍ମଣୀ ଦେଇ ପ୍ରସାଦେ ତାଙ୍କର
କବିତ୍ୱ ଜାଗ୍ରତ ହେବାରୁ ସେହି
ଲେଖି ଥିଲେ ମହାଭାରତ ବହି
ଛନ୍ଦବଦ୍ଧ କବିତାରେ,
ମୁହିଁ ଅଟେ ଛାର, ଶକ୍ତି ନାହିଁ ମୋର,
ଲେଖେ ତାଙ୍କ ପ୍ରେରଣାରେ ।୩୯।

ସୁଜନ ଜନେ ନ ଧରିବ ଦୋଷ
ତୁମ ଦାସର ଦାସର ମୁଁ ଦାସ
ପ୍ରଭୁ ଲଡ୍ଡୁକେଶ୍ୱରଙ୍କର କଥା
ହରିବ ସବୁ ତୁମ ଭବ ବ୍ୟଥା
ମୁହିଁ ଅଧମ ଅକ୍ଷମ,
ଧାଇଲେ ତା ପଦ, କହେ ସିଏ ପଦ,
ଲେଖଇ କରି ପ୍ରଣାମ ।୪୦ ।





# ପ୍ରଥମ ପ୍ରକାଶ

(ପ୍ରଭୁଙ୍କର ଲଡୁବାବା ନାମ ଧାରଣ ସମ୍ପର୍କରେ ବର୍ଣ୍ଣନ)

ମନ କର୍ଣ୍ଣ ଦେଇ ସୁଜନେ ଶୁଣ
କହୁଛି ଲଡୁବାବା ବିବରଣ
ହରିହର ମୂର୍ତ୍ତି ଛତ୍ର ଆକାର
ଶରଣକୁଳେ ନିବାସ ତାଙ୍କର
ପ୍ରସିଦ୍ଧ ନବଦୁର୍ଗରେ,
ଗଜାନନତାତ, ପାଦେ ପ୍ରଣିପାତ,
କରୁଛି ଯୋଡ଼ ହସ୍ତରେ ।୧।
ଭଣ୍ଡାର ପାହାଡ଼ ପାଦ ଦେଶରେ
କୁସୁମୀ ନଦୀର ଉତ୍ତର ତୀରେ
ସୁଦୃଶ୍ୟ ତାଙ୍କର ରେଖ ମନ୍ଦିର
ପାଖରେ ପାବଚ୍ଛ ସଜ୍ଜିତ ସର
କାହିଁ କେଉଁ କାଳୁ ରହି,
ଆର୍ତ୍ତର ଆରତ, ହୋଇ ଅବଗତ,
ଫଳ ଦ୍ୟନ୍ତି ଭକ୍ତି ଚାହିଁ ।୨।
ପ୍ରଭୁଙ୍କର ନାମଟି ଲଡୁବାବା
ତାହାଙ୍କର କିବା ଉପମା ଦେବା
କିଏ କହେ ନାମ ଲଡୁକେଶ୍ୱର
କିଏ କହେ ନକୁଳେଶ ଈଶ୍ୱର
ନାମ ତାଙ୍କ ଭିନ୍ନଭିନ୍ନ,
କଷ୍ଟିଙ୍କର କଷ୍ଟ, କରିବାକୁ ନଷ୍ଟ,
ବିଜେ ଛନ୍ତି ଭଗବାନ ।୩।
ଆଦିବାସୀ ନକୁଳି କନ୍ଧମାନେ
ପୂଜୁଥିଲେ ଲିଙ୍ଗ ଘଞ୍ଚ କାନନେ
ପତ୍ର ପୁଡ଼ିଆରେ ଭୋଗକୁ ନେଇ
ପୂଜୁଥିଲେ ପୁଡ଼ାଭୋଗକୁ ଦେଇ
ତେଣୁ ନକୁଳେଶ ନାମ,
ସେହି ନକୁଳେଶ, ହୋଇ ଲଡୁକେଶ,
ଅକର୍ମେ ଦିଅନ୍ତି କର୍ମ ।୪।

ପ୍ରଭୁଙ୍କର ନାମ ଅଛି ଅନେକ
କହୁଛି ତା' ଚରିତ ଏକ ଏକ
କେଉଁ ନାମ ତାଙ୍କ ହେଲା କିପରି
କିଏ ଦେଲା ତାଙ୍କୁ ନାମ ଏପରି
ଯେଉଁ ନାମ ଧରି ଭକ୍ତ,
ଡାକିଣ ଆତୁରେ, ଜଣାଏ ଛାମୁରେ,
ଯେତେ ତାହାର ଆରତ ।୫।
ପ୍ରଭୁଙ୍କର ଲିଙ୍ଗ ଲଡୁ ଆକାର
ତେଣୁ ନାମ ଅଟେ ଲଡ୍ଡୁକେଶ୍ୱର
କେହି କେହି ଲଡ୍ଡୁବାବା କହନ୍ତି
ଆଉ କେହି ଲଡ୍ଡୁକେଶ ଡାକନ୍ତି
ଡାକିଲେ ଯିଏ ଯେପରି,
ଶରଣ ରକ୍ଷଣ, ପ୍ରଭୁ ପଞ୍ଚାନନ,
ଫଳ ଦିଅନ୍ତି ସେପରି ।୬।
ଅଗ୍ରପୂଜ୍ୟ ପ୍ରଭୁ ଶ୍ରୀଗଜାନନ
ଲଡ୍ଡୁମୋଦକ ପ୍ରିୟ ଭଗବାନ
ଗଣେଶଙ୍କ ନାମ ଲଡ୍ଡୁ ଅଟଇ
ଲଡ୍ଡୁଙ୍କର ବାବା ଯେଣୁ ବୋଲାଇ
ତେଣୁ ଲଡ୍ଡୁବାବା ନାମ,
ସାରା ସଂସାରରେ, ଭକତ ମଧ୍ୟରେ,
ରହିଛି ତାଙ୍କ ସୁନାମ ।୭।
ଶ୍ମଶାନ ନିବାସୀ ଶିବ ଶଙ୍କର
କୁଳ ଗୋତ୍ର ନାହିଁ ଭୂତ ଈଶ୍ୱର
ଅନୁଗାମୀ ଭକ୍ତ ଯେତେ ତାଙ୍କର
କୁଳ ଗୋତ୍ର କିଛି ନାହିଁ କାହାର
ନ କୁଳଙ୍କ ଈଶ ଯେଣୁ,
ନାମ ନକୁଳେଶ, ହୋଇ ଅପଭ୍ରଂଶ,
ଲଡ୍ଡୁକେଶ ଅଟେ ତେଣୁ ।୮।
ପ୍ରଭୁ ଶ୍ରୀକୃଷ୍ଣଙ୍କ ଜନମ ପରେ
ଗୋପପୁରରେ ରାଜା ନନ୍ଦ ଘରେ
ଉତ୍ସବ ପାଳଇ ନନ୍ଦ ରାଜନ
ଦେବଦେବୀ ପାଇଣ ନିମନ୍ତ୍ରଣ
ଉତ୍ସବ ଦେଖିବା ପାଇଁ,
ବାଳଗୋପାଳଙ୍କ, ଦରଶନ ରଙ୍କ,
ଏକେଏକେ ଆସୁଥାଇଁ ।୯।

ନିମନ୍ତ୍ରଣ ପାଇ ପ୍ରଭୁ ଶଙ୍କର
ଯାଉଥାନ୍ତି ମନେ ଖୁସି ଅପାର
ଯମୁନା ରାସ୍ତାରେ ଉଭା ହୋଇଣ
ଦୁଃଖେ ବୋଲେ ମିଳିନି ନିମନ୍ତ୍ରଣ
ଶିବ ନେଲେ ସାଥେ ତାଙ୍କୁ,
ଅତିଥି ସହିତ, ଗଲେ ନିମନ୍ତ୍ରିତ,
ବାଧା ନାହିଁ ଉତ୍ସବକୁ ।୧୦।
ଉତ୍ସବରେ ବାବା ଲଡ୍ଡୁ ବାଣ୍ଟିଲେ
ଲଡ୍ଡୁବାବା ବୋଲି ସର୍ବେ ଡାକିଲେ
ପରଶୁଣି ବାବା ନାମ ଅଜଣା
ଲଡ୍ଡୁବାବା ନାମେ ହୋଇଲେ ଜଣା
ଯମୁନାଙ୍କ ଦୁଃଖ ଗଲା,
ଆନନ୍ଦ ମନରେ, ପ୍ରଭୁଙ୍କ ଛାମୁରେ,
ଇଚ୍ଛା ଏକ ଜଣାଇଲା ।୧୧।
ପାଇ ବାଳ ଗୋପାଳଙ୍କ ଦର୍ଶନ
ଯମୁନା ମନରେ ହେଲେ ପ୍ରସନ୍ନ
କୃତଜ୍ଞତାରେ ହୋଇ ଗଦଗଦ
କହିଲା ପ୍ରଭୁ ହେ ହୁଅ ବରଦ
ସବୁ ଦିନେ ପାଶେ ତୁମ,
ରହିଥିବି ସୁଖେ, ଗାଉଥିବି ମୁଖେ,
ନିଶି ଦିନ ତୁମ ନାମ ।୧୨।
ପ୍ରଭୁଙ୍କ ନାମ ହେଲା ଲଡ୍ଡୁବାବା
ଯମୁନା ପାର୍ବତୀ ନାମରେ ଉଭା
ସେ କାଳୁ ଅଛନ୍ତି ଶରଣକୁଳେ
ଭକତରେ ବର ଦିଅନ୍ତି ହେଳେ
ସଂସାରେ ନାମ ବିଖ୍ୟାତ,
ଦିଅନ୍ତି ଶରଣ, ଯେତେ ଅଶରଣ,
କଷ୍ଟି, ଦୁଃଖୀ, ଆର୍ତ୍ତ ଭକ୍ତ ।୧୩।
ଶିବଙ୍କର ଭକ୍ତ ବୋଲାନ୍ତି ଶୈବ
ସମସ୍ତେ ପୂଜନ୍ତି ଶ୍ରୀମହାଦେବ
ଶୈବ, ପାଶୁପତ୍ୟ, କାଳଦମନ,
କାପାଳୀକ,ଚାରି ଶ୍ରେଣୀରେ ଭିନ୍ନ
ପାଶୁପତ୍ୟ ଯେଉଁ ମତ,
ନକୁଳୀଶ ତା'ର, ପ୍ରଣେତା ପ୍ରବର,
ଇତିହାସରେ କଥିତ ।୧୪।

ଶିବଙ୍କ ଅଷ୍ଟାଦଶ ଅବତାର
ଏ ଅଟନ୍ତି ପ୍ରଥମ ଅବତାର
ଲଡୁକା ବା ଦଣ୍ଡ ହାତରେ ଯେଣୁ
ଲଡୁକେଶ୍ୱର ତାଙ୍କ ନାମ ତେଣୁ
ଏଣୁ ଲଡୁକେଶ ନାମ,
ସନ୍ତୁଷ୍ଟ ଅନ୍ତରେ, ଭକତ ଉପରେ,
ଦିଅନ୍ତି ଅକର୍ମେ କର୍ମ । ୧୫।

ଲଡୁ ବେହେରାର କପିଳା ଗାଈ
ପ୍ରଭୁ ଲୋକଲୋଚନେ ଯାହା ପାଇଁ
ଲଡୁ ନାମୁ ଲଡୁବାବା ପ୍ରକାଶ
ନବଦୁର୍ଗରେ ଏ ଅଟେ ବିଶ୍ୱାସ
ସବୁ ଲୀଳା ପ୍ରଭୁଙ୍କର,
ପ୍ରଭୁ ଲୀଳା ମୟ, ହୁଅନ୍ତୁ ସଦୟ,
ତାଙ୍କ ପାଦେ ନମସ୍କାର । ୧୬ ।





# ଦ୍ୱିତୀୟ ପ୍ରକାଶ

(ପୀଠ ମହିମା ଓ ଶରଣକୁଳ ନାମର ସୃଷ୍ଟି ବର୍ଣ୍ଣନ)

ଶୁଣ ସୁଜନେ ଲଡୁବାବା କଥା
ଶୁଣିଲେ ନ ଲାଗଇ ଭବ ବ୍ୟଥା
ଏବେ କହୁଅଛି ପୀଠ ମହିମା
ଶୁଣିଲେ ଭ୍ରମେ ନ ପଡ଼ିବ ଜମା
ନୟାଗଡ଼ୁ ଦକ୍ଷିଣରେ,
ଆସିକା ରାସ୍ତାରେ, ଶରଣକୁଳରେ,
ଦ୍ୱାଦଶ କିଲୋମିଟରେ ।୧ ।
ଶରଣକୁଳ ଏବେ ନାମ ଯା'ର
ଆଠପାଟଣା ଥିଲା ନାମ ତା'ର
ଆଠଟି ପାଟଣା ଏକାଠି ମିଶି
ଆଠ ପାଟଣା ନାମକୁ ପ୍ରକାଶି
ଗଜେନ୍ଦ୍ରପୁର ପାଟଣା,
ସର୍ବରା ପାଟଣା, ଗୋଧନ ପାଟଣା,
ଏକ ଚାଳିଆ ପାଟଣା ।୨ ।
ସେ ଚନ୍ଦ୍ରଶେଖରପୁର ପାଟଣା
ଭଞ୍ଜ ପାଟଣା ଓ ହାଟ ପାଟଣା
ପାଟଣା ସେ କମଳାଦେଈପୁର
ଏକତ୍ର ହୋଇଛି ଏକ ଠାବର
ମିଶି ଆଠଟି ପାଟଣା,
ରାଜା ଶାସନରେ, ରାଜୁଡ଼ା କାଳରେ,
ଏ ନାମ ଅଟେ ପୁରୁଣା ।୩ ।
ଗଜେନ୍ଦ୍ର ପାଟଣା ନାମ ଯାହାର
ପଥୁରିଆ ସାହି ନାମ ତାହାର
ଭଣ୍ଡାରୀ ଜାତିର ପ୍ରଭୁ ସେବକ
ରାଜାଖଞ୍ଜା ପାଇ ରହନ୍ତି ଲୋକ
ଖଟନ୍ତି ପ୍ରଭୁ ଛାମୁରେ,
ମଶାଲ ହସ୍ତରେ, ଚାଲନ୍ତି ଆଗରେ,
ପ୍ରଭୁଙ୍କ ରାତ୍ରୀ ଯାତ୍ରାରେ ।୪ ।

ସର୍ବରା ପାଟଣା କଥା କହୁଛି
ଗୁଡ଼ିଆ ସାହି ତା ନାମ ହୋଇଛି
ଗୁଡ଼ିଆ ସେବକେ ରହି ସେଠାରେ
ଖଜା ପିଠା ମୁଆଁ ଯଥା ରୀତିରେ
ତିଆରି ନିତି କରନ୍ତି,
ବିଧି ଅନୁସାରେ, ପୂଜା ସମୟରେ,
ନେଇ କତିରେ ଯୋଗାନ୍ତି ।୫ ।
ଯାହାର ନାମ ଗୋଧନ ପାଟଣା
ଅନ୍ୟ ନାମ ତା'ର ରତ୍ନପାଟଣା
ରତ୍ନ ସାହି ତା'ର ନାମ ନୂତନ
ମାଳି ସେବାୟୀଙ୍କର ବାସସ୍ଥାନ
ଖଟନ୍ତି ପ୍ରଭୁ ସେବାରେ,
ଯେ ଯାହାର ପୁରେ, ରହି ଆନନ୍ଦରେ,
ମନଟି ପ୍ରଭୁ ପୟରେ ।୬ ।
ଏକ ଚାଳିଆ ପାଟଣା ଯେଉଁଟି
ନରେନ୍ଦ୍ରପୁର ରତ୍ନସାହି ସେ ଟି
ବ୍ୟବସାୟୀ ଜାତିର ଲୋକମାନେ
ମସଲା ଯୋଗାନ୍ତି ଆଜ୍ଞା ପ୍ରମାଣେ
ଜାତିଟି ତୈଳିକ ବୈଶ୍ୟ,
ପ୍ରଭୁଙ୍କ ସେବାରେ, ରାଜା ଆଦେଶରେ,
ନିଯୁକ୍ତ ପ୍ରଭୁଙ୍କ ପାଶ ।୭ ।
ପାଟଣାଟି ଚନ୍ଦ୍ରଶେଖରପୁର
ହଳିଆ ସାହି ତା ନାମ ଏବର
ଏମାନେ ପ୍ରଭୁଙ୍କ ଜମି ଚଷନ୍ତି
ଚାଉଳ ଧାନ ସମସ୍ତ ଯୋଗାନ୍ତି
ଖଟନ୍ତି ହଳିଆ ରୂପେ,
ପ୍ରଭୁଙ୍କ କାର୍ଯ୍ୟରେ, ମନ ଆନନ୍ଦରେ,
ରତ ଥାନ୍ତି ସ୍ୱ ସ୍ୱ ରୂପେ ।୮ ।
ଭଞ୍ଜ ପାଟଣା ବୋଲି ଯା'ରେ କହି
ଏବେ ତାହାର ନାମ ଭଞ୍ଜସାହି
ଭଞ୍ଜ ବଂଶୀୟ ରାଜାମାନେ ଯାକୁ
ସ୍ଥାପନ କରିଥିଲେ ରହିବାକୁ
ଭଞ୍ଜ ସେ କବି ସମ୍ରାଟ,
ଆସି ଏହିଠାରେ, ରହି ସ୍ୱ ଇଚ୍ଛାରେ,
ପୂଜି ଥିଲେ ଦେବରାଟ ।୯ ।

ହାଟ ପାଟଣା ନାମଟି ଯାହାର
ଛାମୁ ସାହି ନାମ ଏବେ ତାହାର
ମାଳୀ ସେବାସୀଏ ରହି ସେଠାରେ
ପାଳି କରନ୍ତି ଯେ ଯାହା ପାଳିରେ
ପ୍ରଭୁଙ୍କ ପାଖରେ ମନ,
ଯଥା ସମୟରେ, ପହଞ୍ଚି ମନ୍ଦିରେ,
ତୋଷନ୍ତି ପଞ୍ଚଆନନ ।୧୦।
ପାଟଣା ସେ କମଳାଦେଈପୁର
ବ୍ରାହ୍ମଣ ସେବାସୀ ମାନଙ୍କ ଘର
ଏବେ ତା'ର ନାମ ସୁଆର ସାହି
ପୂଜନ୍ତି ପ୍ରଭୁଙ୍କୁ ନିଷ୍ଠାରେ ରହି
ଷୋଡ଼ଶ ଉପଚାରରେ,
ଅବକାଶ ବେଳେ, ଧୂପ ହେବା କାଳେ,
ପୂଜନ୍ତି ଲଡୁକେଶ୍ୱର ।୧୧।
ମନ୍ଦିର ପଛରେ ପଶ୍ଚିମ ଦିଗେ
ଭଣ୍ଡାର ପାହାଡ଼ ରହିଛି ବାଗେ
ଦକ୍ଷିଣେ କୁସୁମୀ ଯାଉଛି ବହି
ପଶ୍ଚିମରୁ ପୂର୍ବ ଦିଗକୁ ଚାହିଁ
ପବିତ୍ର ମାଟି ଏହାର,
ଆଶିଷେ ପ୍ରଭୁର, ଜନମିଣ ନର,
ଟେକ ରଖିଛନ୍ତି ଯାର ।୧୨।
ଶରଣକୁଳ ଏ ପୀଠର ନାମ
କିପରି ହୋଇଛି କହୁଛି ଶୁଣ
ଭୋକୀ ଓ ଅନାଥ ଭିକାରୀ ଲୋକ
ରୋଗୀ ଅଦି ଭିନ୍ନଭିନ୍ନ ପାଟକ
ଶରଣ ସବୁରେ ଦେଇ,
ରଖିଅଛି ଯେଣୁ, ନାମ ତା'ର ତେଣୁ,
ଶରଣକୁଳ ଯେ ହୋଇ ।୧୩।
ଶରଣ ରକ୍ଷଣ ଲଡୁକେଶ୍ୱର
ବିଜେ ହୋଇଛନ୍ତି ଯେଣୁ ଏଠାର
ଏ ସ୍ଥାନର ନାମ ଶରଣକୁଳ
ସାରା ସଂସାରରେ ଅଟେ ବିରଳ
ପବିତ୍ର ଅଟେ ଏ କ୍ଷେତ୍ର,
ପାପକୁ ନାଶିଣ, କାମନା ପୂରଣ,
କରେ ମାଗେ ଯା ଭକତ ।୧୪।

କୂଳହୀନ ଯେତେ ଜନ ସଂସାରେ
ଶରଣ ମିଳିଛି ତାଙ୍କୁ ଏଠାରେ
ଶରଣକୁଳ ନାମ ତେଣୁ ଯାର
ପାପ ନାଶିବାରେ ଏ ବଳିୟାର
ସଂସାରେ ଏ ପୀଠସିଦ୍ଧ,
ଭକ୍ତେ ଦିଏ ବୁଦ୍ଧି, ପୁଣି ଦିଏ ସିଦ୍ଧି,
ନାମ ଏହାର ପ୍ରସିଦ୍ଧ ।୧୫ ।

କୁସୁମୀ ନଦୀ ସେ ପାପନାଶିନୀ
କୂଳରେ ତାହାର ଶରଣ ଘେନି
ରହିଛି ଯେଣୁ ଏ ପୀଠ ବିରଳ
ତେଣୁ ନାମ ଯାର ଶରଣକୁଳ
ସଂସାରେ ପୁଣ୍ୟଦାୟିନୀ,
ଦୁଃଖ ବିମୋଚନୀ, ଗୌରବ ଦାୟିନୀ,
ଧନ୍ୟ ପବିତ୍ର କାରିଣୀ ।୧୬।





# ତୃତୀୟ ପ୍ରକାଶ

(ଚନ୍ଦ୍ରଙ୍କୁ ଦକ୍ଷ ଓ ବୃହସ୍ପତିଙ୍କର ଅଭିଶାପ ପ୍ରଦାନ, ଚନ୍ଦ୍ରଙ୍କର ଶିବାରାଧନା ନିମନ୍ତେ ଲିଙ୍ଗ ପ୍ରତିଷ୍ଠା ଓ ଅଭିଶାପ ମୋଚନ ବର୍ଣ୍ଣନ)

ଲଡୁକେଶ୍ୱରଙ୍କୁ କରି ସ୍ମରଣ
କହୁଛି ତାଙ୍କ କିମ୍ବଦନ୍ତୀ ଶୁଣ
ପ୍ରଭୁ କାହିଁ ଥିଲେ ଏଥେ ଆସିଲେ
କେମ୍ନେ ଲଡୁବାବା ନାମ ବହିଲେ
ଶୁଣିଲେ କଥା ତାଙ୍କର,
ମନେ ଖୁସି ଜାତ, ହେବ ଅପ୍ରମିତ,
ପବିତ୍ର ହେବ ଶରୀର ।୧ ।
ନିଶାକର ପାଠ ପଢ଼ିବା ଆସେ
ପହଞ୍ଚିଲେ ଦେବଗୁରୁଙ୍କ ପାଶେ
ପଢ଼ିଲେ ସେ ପାଠ ମନ ଲଗାଇ
ମନର କାରକ ଦେବତା ସେଇ
ପଢ଼ିଲେ ବେଦ ବେଦାଙ୍ଗ,
ପୁରାଣ ଦର୍ଶନ, ସେ ଉପପୁରାଣ,
ଜ୍ଞାନର ଯେତେକ ଅଙ୍ଗ ।୨ ।
ପଢ଼ିଲେ ପାଠ ରହି ଗୁରୁ ଗୃହେ
ଯୌବନ ଛୁଇଁଲା ଆସିଣ ଦେହେ
ଥିଲା ସେ ଏକଇ ଦୁର୍ବଳ କ୍ଷଣ
ତାରା ଚନ୍ଦ୍ର ହୋଇଲେ ଏକ ମନ
ତାରା ହେଲେ ଗର୍ଭବତୀ,
ବୁଧ ହେଲେ ଜନ୍ମ, ଗୁରୁଙ୍କର ମନ,
କ୍ରୋଧରେ ଜର୍ଜର ଅତି ।୩ ।
ତାରା ରହିଲେ ଚନ୍ଦ୍ରଦେବ ଘରେ
ବୃହସ୍ପତି ଗଲେ ଡାକି ତାହାରେ
ଛାଡ଼ିବାକୁ ଚନ୍ଦ୍ର କରିଲେ ମନା
କଟୁ କଥା ତାଙ୍କୁ କହିଲେ ନାନା
କ୍ରୋଧରେ ଅନ୍ଧ ହୋଇଣ,
ହେଲେ ସଜବାଜ, କରିବାକୁ ଦ୍ୱନ୍ଦ୍ୱ,
ଆସିଲେ ଦେବତାଗଣ ।୪ ।

ଦେବଗୁରୁ ଅଭିଶାପ କ୍ରୋଧରେ
ଦେଲେ ଶଶାଙ୍କେ ଆସି ଆବେଶରେ
ହୀନବୀର୍ଯ୍ୟ ତୁହି ହେବୁ କହିଲେ
ପକ୍ଷେ ଛିଡ଼ି ପକ୍ଷେ ବଢ଼ିବୁ ଭଲେ
[illegible] ଗୁରୁ ପତ୍ନୀ ତୁ ହରିଲୁ
ଗୁରୁ ଗୁରୁଜନ, ମାନ ସନମାନ,
କାମ ଭୋଳେ ନ ମାନିଲୁ ।୫ ।

ଦେବରାଜ ମଧ୍ୟସ୍ଥତା କରିଲେ
ତାରା ବୃହସ୍ପତି ଗୃହେ ଫେରିଲେ
ସର୍ବେ ଦେବଗଣେ କଲେ ବିଚାର
ଚନ୍ଦ୍ରଙ୍କର କରିବେ ବାହାଘର
ଦକ୍ଷଙ୍କର ପୁରେ ଯାଇ,
ସତେଇଶ କନ୍ୟା, ପ୍ରତ୍ୟେକ ଅନନ୍ୟା,
ବାହାଦେଲେ ତାଙ୍କୁ ନେଇ ।୬ ।

ଅଶ୍ୱିନୀ, ଦ୍ୱିଜା, କୃତ୍ତିକା, ରୋହିଣୀ
ମୃଗଶୀରା, ଆର୍ଦ୍ରା, ପୂର୍ବଫାଲଗୁନୀ
ପୁନର୍ବସୁ, ମଘା, ସ୍ୱାତୀ, ଅଶ୍ଳେଷା
ଉତ୍ତରଫାଲ୍ଗୁନୀ, ବିଶାଖା, ପୁଷ୍ୟା
ଅନୁରାଧା, ଜ୍ୟେଷ୍ଠା, ହସ୍ତା,
ମୂଳା, ପୂର୍ବାଷାଢ଼ା, ଉତ୍ତରଆଷାଢ଼ା,
ଶ୍ରବଣା, ଧନିଷ୍ଠା, ଚିତ୍ରା ।୭ ।

ଶତଭିଷା,ଉତ୍ତରଭାଦ୍ରପଦ
ରେବତୀ ସହ ପୂର୍ବଭାଦ୍ର ପଦ
ଏକୁ ଏକ ବଳି ସର୍ବେ ସୁନ୍ଦରୀ
ସର୍ବଗୁଣ ସମ୍ପର୍ଣ୍ଣା ଅପସରୀ
ଚନ୍ଦ୍ରଙ୍କ ମନ ମୋହନ୍ତି,
ସମସ୍ତ ଭଗିନୀ, ସ୍ୱାମୀ ସୋହାଗିନୀ,
ଆନନ୍ଦେ ଦିନ ବଞ୍ଚନ୍ତି ।୮ ।

କିଛି ଦିନ ଯାଆନ୍ତେ ଏହିପରି
ଭଉଣୀଏ ଦେଖିଲେ ଲକ୍ଷ୍ୟ କରି
ରୋହିଣୀ ପ୍ରତି ଅଧିକ ଆସକ୍ତ
ଶଶାଙ୍କ ହେଉଛନ୍ତି ବିଶେଷତଃ
ଈର୍ଷା ମନରେ କରିଲେ,
ଦକ୍ଷଙ୍କ ପାଖରେ, ଚନ୍ଦ୍ର ବିରୁଦ୍ଧରେ,
ଅଭିଯୋଗ ନେଇ ଦେଲେ ।୯ ।

ଦକ୍ଷ ନିଶାକରଙ୍କୁ ଡାକି ପାଶେ
କନ୍ୟାଙ୍କର ଅଭିଯୋଗ ପ୍ରକାଶେ
ଏକାଧିକ ପତ୍ନୀ ଯେଉଁ ପତିର
ସମସ୍ତଙ୍କୁ ସମାନ ବ୍ୟବହାର
ଦେଖାଇବା ଅଟେ ଧର୍ମ,
ସ୍ନେହ ଆଦରରେ, ସ୍ନେହ କରିବାରେ,
ନ କରିବ ବେଶି କମ୍ ।୧୦।
ଦକ୍ଷ ଶଶାଙ୍କେ ବୁଝାଇବା ପରେ,
ନ ନେଲେ ଏକଥା ତିଳେ ମନରେ
କ୍ରୋଧରେ ପ୍ରଜାପତି ଦେଲେ ଶାପ
ନିଶାକର ହରାଇବେ ସ୍ୱରୂପ
କଲେ ସ୍ନେହ ଅଳ୍ପ ବେଶି,
ରୂପ ବି ତୁମର, ହେବ ନିରନ୍ତର,
ମାସର ପ୍ରତ୍ୟେକ ନିଶି ।୧୧।
ପାଇ ଦୁଇ ଦୁଇଟା ଅଭିଶାପ
ଚନ୍ଦ୍ରଙ୍କର ଭାଙ୍ଗିଗଲା ବହପ
ଦୁଃଖରେ ହୋଇଣ ଅତି ଆତୁର
ଦେବଗଣ ସହ କରି ବିଚାର
ଦକ୍ଷଙ୍କୁ କଲେ ପ୍ରାର୍ଥନା,
ଶାପୁ କେହ୍ନେ ମୁକ୍ତି, ହେବି ପ୍ରଜାପତି,
ନିବେଦନ କର ଘେନା ।୧୨।
ଦକ୍ଷ ହୋଇ ଶାନ୍ତ ବୋଲେ ବଚନ
ନିଶାକର ଶୁଣ ଦେଇଣ ଧ୍ୟାନ
ସବୁ କନ୍ୟାଙ୍କୁ ସମାନ ଭାବରେ
ଆଦର କରିବ କର୍ମ ମନରେ
ତୋଷିବ ଶିବ ଶଙ୍କର,
ତେବେ ରୂପ ତୁମ, ହେବ ଅପ୍ରତିମ,
ପାଇବ ପୁଣି ପୂର୍ବର ।୧୩।
ଦିନେ ଦିନେ ସବୁ ପତ୍ନୀଙ୍କ ପାଶ
କରିବ ନିଚ୍ଛନ୍ଦେ ତୁମେ ନିବାସ
ପ୍ରତ୍ୟେକଙ୍କୁ ଦେବ ସମାନ ସ୍ନେହ
ପ୍ରକାଶ କରିବ ସମ ଆଗ୍ରହ
ତପସ୍ୟାରେ ମହାଦେବ,
ସନ୍ତୁଷ୍ଟ କରିଲେ, ତାଙ୍କ ବର ତୁଲେ,
ଶାପରୁ ମୁକ୍ତ ହୋଇବ ।୧୪।

ଦକ୍ଷ ପ୍ରଜାପତି ବଚନ ଶୁଣି
ସମ୍ମତ ହୋଇଣ ସେ ନିଶାମଣି
ବାହାରିଲେ ତପ ସାଧିବା ପାଇଁ
ଏହି ସମୟରେ ବୀଣା ବଜାଇ
ଦେବର୍ଷି ନାରଦ ଆସି,
ଚନ୍ଦ୍ରଙ୍କ ପ୍ରସ୍ତୁତି, ଦେଖି କରି ଯତି,
ହୋଇଲେ ବହୁତ ଖୁସି ।୧୫।
ବୋଇଲେ ହେ ଚନ୍ଦ୍ରଦେବ ତୁମର
ମନ ବଳିଛି ଶଙ୍କର ପୟର
ଏ ଅଟଇ ବଡ଼ ଶୁଭ ଲକ୍ଷଣ
ନିଶ୍ଚେ ନଷ୍ଟ ହୋଇବ ପାପମାନ
ଗାଇ ଓଁ ନମଃ ଶିବାୟ,
ସମସ୍ତ ପାପରୁ, ଶିବଙ୍କ କୃପାରୁ,
ମୁକ୍ତ ହୋଇବ ନିଶ୍ଚୟ ।୧୬।
ମର୍ତ୍ତ୍ୟରେ ରହିଛି ଏକଇ ସ୍ଥାନ
ସତେ ଯେସନ ନନ୍ଦନ କାନନ
ଭରିଛି ତହିଁରେ ଅନେକ ବୃକ୍ଷ
ପାପ ନାଶିବାରେ କ୍ଷେତ୍ର ପ୍ରତ୍ୟକ୍ଷ
ସନ୍ଧି ଦୁଇ ପର୍ବତର,
ପାର୍ଶ୍ୱେ ରତ୍ନମାଳା, ସୁଜଳା ସୁଫଳା,
ଅନ୍ୟ ପାରୁଶେ ଭଣ୍ଡାର ।୧୭।
ଦୁଆଣ୍ଟ କୁସୁମୀ ଦୁଇ ଭଉଣୀ
ଛନ୍ତି ନବଦୁର୍ଗା ପାପ ନାଶିନୀ
ପଶୁ ପକ୍ଷୀ କରନ୍ତି ବିଚରଣ
ମନ ତାଙ୍କର ଡର ଭୟ ଶୂନ୍ୟ
ଶାନ୍ତି ପ୍ରଦ ଏହି ସ୍ଥାନ,
ତପ ସାଧିବାକୁ, ଇଷ୍ଟ ତୋଷିବାକୁ,
ଏ କ୍ଷେତ୍ର ଅଟେ ଅନନ୍ୟ ।୧୮।
ଭଣ୍ଡାରର ପୂର୍ବ ପାଦଦେଶରେ
କୁସୁମୀ ନଦୀର ଉତ୍ତର ତୀରେ
କ୍ଷୁଦ୍ର ଝରଣାଏ ଯାଉଛି ବହି
ସେହି ସ୍ଥାନ ଦିଏ ମନକୁ ମୋହି
ସେ ସ୍ଥାନ ଅଟେ ଏପରି,
କ୍ଷଣେ ଗଲେ ବସି, ମନ ଯାଏ ପଶି,
ଚିନ୍ମୟା ନନ୍ଦଙ୍କ ପୁରି ।୧୯।

ସେ କ୍ଷେତ୍ର ଅଟେ ପରମ ଦୁର୍ଲଭ
ପ୍ରଦାନେ ସକ୍ଷମ ସେ ସର୍ବ ଶୁଭ
ସର୍ବ କ୍ଷେତ୍ର ମଧ୍ୟେ ଅଟେ ବିରଳ
ଦର୍ଶନରେ ମିଳଇ ଶୁଭଫଳ
କ୍ଷେତ୍ର ଅତ୍ୟନ୍ତ ପବିତ୍ର,
ସବୁ ମନସ୍କାମ, କରେ ପୂର୍ଣ୍ଣକାମ,
ମୋକ୍ଷ ପ୍ରଦାୟୀ ସାକ୍ଷାତ ।୨୦।
ଅଶୋକ ଅର୍ଜ୍ଜୁନ ଶାଳ ବକୁଳ
ପୁନାଗ କଇଥ ଓ ନାରିକେଳ
ଚମ୍ପା ପାଟଳ ତାଳ କର୍ଣ୍ଣିକାର
କଦମ୍ବ ଚୂତ ବିଲ୍ୱ କୋବିଦାର
ଲୋଧ୍ରା ଓଉ ଅଁଳା ସର୍ଜ,
ଧବ ଅଭକର୍ଣ୍ଣ, ସମି ଆଦି ପୁଣି,
ଛନ୍ତି ଦେବଦାରୁ ଭୁର୍ଜ ।୨୧।
କେତକୀ ତମାଳ ଓ ଅତିମୁକ୍ତା
କୁନ୍ଦ ବାଣ କୁବ୍ଜ ମାଳତୀ ଲତା
ରହିଛି ପୁଷ୍ପ କୃଷ୍ଣ କରବୀର
ସୁଗନ୍ଧ ତାର ଅତି ମନୋହର
ପାରିଜାତ ଓ ମନ୍ଦାର,
କୁନ୍ଦ ଆମ୍ରାତକ, ଚନ୍ଦନ କିଂଶୁକ,
ମନ ମୋହେ ଗନ୍ଧ ତାର ।୨୨।
ସବୁ ଋତୁରେ ଏଠି ଫୁଲଫଳ
ପୁରନ୍ତି ଏ ସର୍ବେ ବୃକ୍ଷ ସକଳ
ପକ୍ଷୀମାନଙ୍କ ଗାନେ ମୁଖରିତ
ଆନନ୍ଦ ଆନନ୍ଦ ଦିଶେ ସର୍ବତ୍ର
ମନ ମୋହେ ଦୃଶ୍ୟ ତାର,
ରଙ୍ଗ ପକ୍ଷୀଙ୍କର, ଲାଗେ ଆପଣାର,
ଦୃଶ୍ୟ ଦୁଃଖ କରେ ଦୂର ।୨୩।
ଶୀଘ୍ର ଯାଅ ତୁମେ ସେହି କ୍ଷେତ୍ରକୁ
ଲିଙ୍ଗ ସ୍ଥାପି ଆଚରିବ ତପକୁ
ସ୍ଥାନର ପ୍ରଭାବରେ ମହେଶ୍ୱର
ଆଶୁତୋଷ ରୂପରେ ଦେବେ ବର
ପାପ ତୁମ ନାଶ ଯିବ,
ସଂସାର ମଧ୍ୟରେ, ଶିବଙ୍କ କୃପାରେ,
ପୂର୍ବ ରୂପକୁ ପାଇବ ।୨୪।

ଚନ୍ଦ୍ରଶୀଘ୍ର ଯାଇ ସେହି ସ୍ଥାନରେ
ଲିଙ୍ଗଟିଏ ସ୍ଥାପି ଗୁମ୍ଫା ମଧ୍ୟରେ
ଛତ୍ରାକାର ଲିଙ୍ଗ ଶିବାବତାର
ପୂର୍ଣ୍ଣଚନ୍ଦ୍ର ପରି ରୂପ ତାଙ୍କର
ନାମ ତାଙ୍କର ଜପିଲେ,
ବିଲ୍ୱ ପତ୍ର ଦେଇ, ଫୁଲରେ ସଜେଇ,
ସେହି ଠାରେ ତପ କଲେ ।୨୫ ।
ଆଶୁତୋଷ ଶୀଘ୍ର ହୋଇଲେ ତୋଷ
ତ୍ରିଶୂଳରେ ଶାପ କରିଲେ ନାଶ
ପ୍ରତ୍ୟକ୍ଷେ ଚନ୍ଦ୍ରଙ୍କୁ ଦେଲେ ଦର୍ଶନ
କୃପାବାରି ପ୍ରଭୁ କଲେ ବର୍ଷଣ
ନିଶାକର କୃତ୍ୟକୃତ୍ୟ,
ପ୍ରଭୁ ପାଦ ଚିନ୍ତି, ଭାବେ ଗାଏ ସ୍ତୁତି ;
କରି ପାଦେ ଦଣ୍ଡବତ ।୨୬ ।

## ଚନ୍ଦ୍ରଙ୍କ ସ୍ତୁତି

ହେ ଲଡୁବାବା ହରିହର ମୂର୍ତ୍ତି
ହେ ଛତ୍ରାକାର ବିଶାଳ ସ୍ୱରୂପୀ
ହେ ଅନୁଗ୍ରହ ପ୍ରାର୍ଥୀ ମୁକ୍ତିଦାତା
ହେ ଉମାପତି ପ୍ରଭୁ ବିଶ୍ୱପିତା
ଉଦ୍ଧାର ମୁହିଁ ନିରେଖି,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡୁକେଶ ତୁମେ ରଖି ।। ୨୭ ।।
ଯୋଗେଶ ଶିରେ ଶୋଭଇ ଶଶାଙ୍କ
ହେ କାମାରୀ ବିନାଶ ପାପ ପଙ୍କ
ହିମା ଦ୍ୱିଜା ବଲ୍ଲଭ ମହାଦେବ
ହେ କାଳରାତ୍ରୀ ପତି ସଦାଶିବ
ଉଦ୍ଧାର ମୁହିଁ ନିରେଖି,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡୁକେଶ ତୁମେ ରଖି ।। ୨୮ ।।
ହେ ମହା ପ୍ରଭୋ ତ୍ରିପୁରାନ୍ତକାରୀ
ତାପତ୍ରୟ ତାପିତ ରକ୍ଷାକାରୀ
ଅନାଥ ବନ୍ଧୁ କରୁଣାର ସିନ୍ଧୁ
ଯୋଗେଶ୍ୱର ତୁମେ ଆର୍ତ୍ତିର ବନ୍ଧୁ
ଉଦ୍ଧାର ମୁହିଁ ନିରେଖି,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡୁକେଶ ତୁମେ ରଖି ।। ୨୯ ।।

ପିନାକ ଡମ୍ବରୁ ତ୍ରିଶୂଳଧାରୀ
ଦକ୍ଷ ଅହଂକାର ନାଶନକାରୀ
ହେ ମାତା ଗୌରୀ ଆରତ ନାଶକ
ସମୁଦ୍ର ମନ୍ଥନ ବିଷ ଭକ୍ଷକ
ଉଦ୍ଧାର ମୁହିଁ ନିରେଖ,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡ୍ଡୁକେଶ ତୁମେ ରଖ ॥୩୦ ॥

ହେ ବିଲ୍ୱ ବିଷ୍ଣୁ ବଲ୍ଲଭା ଧାରକ
ହେ ଭ୍ରାମରୀ ମାତା ପ୍ରିୟ ସାତ୍ତ୍ୱିକ
ହେ ନିତ୍ୟ ହେ କାନ୍ତ କୀର୍ତ୍ତିଭୂଷଣ
ହେ ଶଶାଙ୍କଧର ନାଗଧାରଣ
ଉଦ୍ଧାର ମୁହିଁ ନିରେଖ,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡ୍ଡୁକେଶ ତୁମେ ରଖ ॥୩୧ ॥

ହେ ଅନ୍ଧକାରି କମନୀୟ ରୂପ
ବ୍ୟାଘ୍ର ଚର୍ମାମ୍ବର ପ୍ରମଥାଧିପ
ହେ ଇନ୍ଦ୍ରିୟ ସ୍ୱାମୀ ସ୍ୱୟଂ ପ୍ରକାଶ
ହେ ମୃଡ଼ ମୃତ୍ୟୁଞ୍ଜୟ କୃତ୍ତିବାସ
ଉଦ୍ଧାର ମୁହିଁ ନିରେଖ,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡ୍ଡୁକେଶ ତୁମେ ରଖ ॥୩୨ ॥

ହେ ହର୍ତ୍ତା ଦେବପ୍ରିୟ ଦେବନାଥ
ଭୂତେଶ ଭୂତ ଭବ୍ୟ ଭବନ୍ନାଥ
ହେ ଦୃପ୍ତ ଧୂର୍ଯ୍ୟ ଦର୍ପହା ଦର୍ପଦ
ହେ ନୀଳଲୋହିତ ଅଭୟ ପଦ
ଉଦ୍ଧାର ମୁହିଁ ନିରେଖ,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡ୍ଡୁକେଶ ତୁମେ ରଖ ॥୩୩ ॥

ହେ ଅଜ ଗଜାରୀ ହେ ଗଙ୍ଗାଧର
ହେ ନାଥ ବୃଷାସନ ସ୍ମର ହର
ହେ ଅଜାତଶତ୍ରୁ ହେ ଯଜ୍ଞ ଈଶ
ହେ ଚନ୍ଦ୍ରଶେଖର ପ୍ରଭୁ ଗିରୀଶ
ଉଦ୍ଧାର ମୁହିଁ ନିରେଖ,
ହେ ପାର୍ବତୀ ପତେ, ନିରାଶ୍ରୟ ମୋତେ,
ଲଡ୍ଡୁକେଶ ତୁମେ ରଖ ॥୩୪ ॥

ନିଶାକର ସ୍ତୁତି ଶୁଣି ଶଙ୍କର
ମନରେ ଖୁସି ହୋଇଲେ ଅପାର
ପୁଛିଲେ ତାହାକୁ ଅଭୟ ଦେଇ
କୁହ ହିମାଂଶୁ ଡାକ କାହିଁ ପାଇଁ
ପୁରାଇବି ତୁମ ଆଶ,
ଭକ୍ତିରେ ତୁମର, ସ୍ତୁତିରେ ତୁମର,
ମନ ମୋ ଅତି ହରଶ ।୩୫ ।
ନକ୍ଷତ୍ରେଶ କହେ ନୀଳ ଲୋହିତ
ବର ଦେଇ ଶାପୁ କରନ୍ତୁ ମୁକ୍ତ
ଅହଂକାରେ ତ୍ରୁଟି କରି ଦେଇଛି
ଅନୁତାପାନଳେ ଦଗ୍ଧ ହେଉଛି
କ୍ଷମା ଗୁଣେ କ୍ଷମାକର,
ହେ ପ୍ରଭୁ ଉଦ୍ଧାର, ସ୍ୱରୂପ ମୋହର,
ମୋତେ ମିଳୁ ପୁନର୍ବାର ।୩୬ ।
ତଥାସ୍ତୁ କହିଲେ ଚନ୍ଦ୍ରଶେଖର
ତୁମେ ମୋର ପ୍ରିୟରୁ ପ୍ରିୟତର
ପ୍ରତିଷ୍ଠିତ ଲିଙ୍ଗ ତୁମ ପୂଜିତ
ବୋଲାଇବ ମର୍ତ୍ତ୍ୟେ ଅତି ପବିତ୍ର
ଯିଏ ଏହାକୁ ପୂଜିବ,
ଅବିଳମ୍ବେ ତାର, ପାପ ହୋଇ ଦୂର,
ବାଞ୍ଛିତ ଫଳ ପାଇବ ।୩୭ ।
ବରପାଇ ଶଶାଙ୍କ ଗଲେ ଚଳି
ନିଜ ପୁରେ ସର୍ବ ପତ୍ନୀଙ୍କୁ ମିଳି
କହିଲେ ସବୁ ବାରତା ବୁଝାଇ
ବର କଥା ତାଙ୍କୁ ଦେଲେ ବୁଝାଇ
ଭଗିନୀଏ ମିଳିମିଶି,
ରହିଲେ ଖୁସିରେ, ପାଳି ଅନୁସାରେ,
ପାଇଲେ ପାଖରେ ଶଶି ।୩୮ ।
ସେ କାଳରୁ ପ୍ରଭୁ ଏହି ସ୍ଥାନରେ
ଦେବେ ପୂଜନ୍ତି ଆସିଣ ଗୁପ୍ତରେ
ଶୈବଶାକ୍ତ ବଇଷ୍ଣବ ସମସ୍ତେ
ଆସନ୍ତି ବିନାଦ୍ୱିଧାରେ ଏ କ୍ଷେତ୍ରେ
ପୂଜନ୍ତି ଈଶାନେଶ୍ୱର,
ଭକ୍ତି ଶ୍ରଦ୍ଧା ଦେଖି, ବାଦକୁ ଉପେକ୍ଷି,
ଦିଅନ୍ତି ଫଳ ଶଙ୍କର ।୩୯ ।

ଚନ୍ଦ୍ରମୌଳି ପ୍ରଭୁ ଶିବଶଙ୍କର
ପାଦେ ମନ ମୋ ରହୁ ନିରନ୍ତର
ଦୟାବନ୍ତ ଦୟା ରହୁ ମୋ ପରେ
ଅହର୍ନିଶ ହୃଦେ ତାଙ୍କୁ ମୁଁ ସ୍ମରେ
କୃପାକଟାକ୍ଷେ ତାଙ୍କର,
ନଷ୍ଟ ହେଉ ମୋର, ପ୍ରାରବ୍ଧର ଭାର,
ପାଦେ କରେ ନମସ୍କାର ।୪୦।





# ଚତୁର୍ଥ ପ୍ରକାଶ

(ବିଶ୍ୱାମିତ୍ରଙ୍କର ବଶିଷ୍ଠଙ୍କ ସହ ଶତ୍ରୁତା, ପରାଜୟ, ଶିବାରାଧନା ଓ ବରପ୍ରାପ୍ତି ବର୍ଣ୍ଣନା)

ବ୍ରହ୍ମର୍ଷି ବିଶ୍ୱାମିତ୍ର ଏ କ୍ଷେତ୍ରରେ
ମଠପଦା ବୋଲି ନାମେ ସ୍ଥାନରେ
ଆଶ୍ରମ ନିର୍ମାଣ କରି ରହିଣ
ପୂଜନ୍ତି ପ୍ରଭୁ ପାଦେ ଦେଇ ମନ
ଅକର୍ମ କର୍ମ ଦାୟକ,
ଭକତି ମନରେ, ନମିଲେ ପାଦରେ,
ପୁରାନ୍ତି କାମନା ଯାକ ।୧।
ତାଙ୍କର ବୃତ୍ତାନ୍ତ କହୁଛି ଶୁଣ
ଶୁଣିଲେ ପବିତ୍ର ହୋଇବ ମନ
ପ୍ରଭୁଙ୍କ ଚରଣେ ଯାଇ ଲାଗିବ
ଅନେକ ପୁଣ୍ୟ ଅରଜନ ହେବ
ପ୍ରଭୁ ହୋଇବେ ପ୍ରସନ୍ନ,
ଭକତି ବଢ଼ିବ, ଅଭାବ ଛିଡ଼ିବ,
କୃପା କରିବେ ଈଶାନ ।୨।
ଗାଧି ନନ୍ଦନ ରାଜା ବିଶ୍ୱାମିତ୍ର
ଚରିତ୍ର ତାଙ୍କର ଅତି ପବିତ୍ର
କାନ୍ୟକୁବ୍ଜ ରାଜ୍ୟର ନରପତି
ବଳବୀର୍ଯ୍ୟ ଶୌର୍ଯ୍ୟେ ଅଗ୍ରଣୀ ଅତି
ନ୍ୟାୟବାନ ଇଷ୍ଟ ପ୍ରିୟ,
ଅନାବୃଷ୍ଟି ଶୂନ୍ୟ, ଅପମୃତ୍ୟୁହୀନ,
ରାଜ୍ୟ, ପ୍ରଜା ଶାନ୍ତିପ୍ରିୟ ।୩।
ଧନଧାନ୍ୟରେ ରାଜ୍ୟ ସଦା ପୂର୍ଣ୍ଣ
ଅନ୍ନପୂର୍ଣ୍ଣା ରାଜ୍ୟ ପରେ ପ୍ରସନ୍ନ
ନାରୀମାନେ ନିର୍ଭୟେ ବିଚରନ୍ତି
କୃଷକେ ନିଶ୍ଚିନ୍ତ ଜମି ଚଷନ୍ତି
ଜ୍ଞାନୀଗୁଣୀ ଯେତେ ଜନ,
ତାଙ୍କର ରାଜ୍ୟରେ, ସବୁ ସମୟରେ,
ମିଳଇ ତାଙ୍କୁ ସମ୍ମାନ ।୪।

ଦିନେ ରାଜା ସୈନ୍ୟ ସାମନ୍ତ ନେଇ
ବନକୁ ଚଳିଲେ ଶିକାର ପାଇଁ
ଭ୍ରମିଭ୍ରମି ବନେ ସନ୍ଧ୍ୟା ଆଗତ
ବିକଳ ହୋଇଲା ରାଜାଙ୍କ ଚିତ୍ତ
ସୈନ୍ୟଙ୍କୁ ଦେଲେ ନିର୍ଦ୍ଦେଶ,
ଚାଲ ଯିବା ଫେରି, ଶିକାର ନ କରି,
ଥାଉଣୁ ଦିବସ ଶେଷ ।୫ ।
ଆଶ୍ରମ ଏକ ଫେରିବା ରାସ୍ତାରେ
ଦେଖିଲେ ନୃପ ଅନତୀ ଦୂରରେ
ଫଳ ପୁଷ୍ପେ ଆଶ୍ରମ ଥିଲା ପୂର୍ଣ୍ଣ
ଶାନ୍ତି ସେଠି କରେ ବିରାଜମାନ
ଖୁସି ମନରେ ରାଜନ,
ଆଶ୍ରମାଧିପତି, ନିକଟେ ଝଟତି,
ଦୂତ କରିଲେ ପ୍ରେରଣ ।୬ ।
ଦୂତ ଯାଇ ଦେଖେ ଆଶ୍ରମ କତି
ବ୍ରହ୍ମର୍ଷି ବଶିଷ୍ଠ ମହାନ ଯତି
ଚରଣେ ପ୍ରଣାମ କରି ତାଙ୍କର
ସନ୍ଦେଶ ପ୍ରଦାନ କଲେ ଭୂପର
ଜଣାଇଲେ ବଶିଷ୍ଠଙ୍କୁ,
ରାଜା ବିଶ୍ୱାମିତ୍ର, କ୍ଷଣ କିଛି ଅତ୍ର,
ଇଚ୍ଛା ବିଶ୍ରାମ ନେବାକୁ ।୭ ।
ଆନନ୍ଦେ ଗଦ୍ଗଦ ଋଷି ହୋଇଲେ
ଆଶ୍ରମୁ ଆସି ନୃପେ ନିମନ୍ତ୍ରିଲେ
ରାଜା ସୈନ୍ୟ ସାମନ୍ତ ସାଥେ ଧରି
ଆଶ୍ରମେ ରହିଲେ ପ୍ରବେଶ କରି
ଶ୍ରମ ବିନୋଦନ ପରେ,
ଯିବାକୁ ବାହାରି, ସ୍ଥାନ ଛାଡ଼ିକରି,
ନିବେଦିଲେ ଯତି ଠାରେ ।୮ ।
ଯତି କହିଲେ ସମସ୍ତଙ୍କ ପାଇଁ
ଖାଦ୍ୟ ପେୟ ଅଛି ପ୍ରସ୍ତୁତ ହୋଇ
ସମସ୍ତେ ପ୍ରସାଦ ଯିବେ ପାଇଣ
ରାଜନ ଊଣା ନ କରନ୍ତୁ ମନ
ଯେତେ ସଇନ ସାମନ୍ତ,
ମଧେ କିଛିକ୍ଷଣ, ନାନା ଖାଦ୍ୟମାନ,
ଭୁଞ୍ଜିଲେ ରାଜା ସହିତ ।୯ ।

ଏଡ଼ିକି ଛୋଟ ଆଶ୍ରମ ମଧ୍ୟରେ
ଏତିକି ଅଳ୍ପ ମାତ୍ର ସମୟରେ
ଏ କଥା ସମ୍ଭବ ହେଲା କେମିତି
ଆଶ୍ଚର୍ଯ୍ୟ ଲାଗୁଅଛି ଏହା ଅତି
ରାଜାଙ୍କ ମନରେ ପ୍ରଶ୍ନ,
ଯତି ସନ୍ନିଧାନ, ଯାଇ ସମାଧାନ,
ପୁଛିଲେ ତାଙ୍କୁ ରାଜନ ।୧୦।
ସରଳେ ଯତି କହିଲେ ରାଜାଙ୍କୁ
ସ୍ନେହେ ଦେଖାଇ ନନ୍ଦିନୀ ମାତାଙ୍କୁ
କାମଧେନୁ ମାତାଙ୍କର ନନ୍ଦିନୀ
ସ୍ୱର୍ଗଗାଭୀ ଯାଙ୍କ ନାମ ନନ୍ଦିନୀ
ପ୍ରସାଦୁ ଏ ମାତାଙ୍କର,
ଆଶ୍ରମେ ମିଳଇ, ଯାହା ମୁଁ ଇଚ୍ଛଇ,
ଯାହା ଦ୍ରବ୍ୟ ଦରକାର ।୧୧।
ଶୁଣି ରାଜା ମନେ ହୋଇଲେ ଖୁସି
ତତ୍କ୍ଷଣେ ମନେ ଲୋଭ ଗଲା ପଶି
ବିନୟ କରି ଯତିଙ୍କୁ ମାଗିଲେ
ଗୋମାତାଙ୍କୁ ମୋତେ ଦିଅ କହିଲେ
ଆଶ୍ରମେ ଯା' ଦରକାର,
ସବୁ ଦ୍ରବ୍ୟମାନ, କରିବି ପ୍ରେରଣ,
ଏ ସତ୍ୟ ବଚନ ମୋର ।୧୨।
ବଶିଷ୍ଠ ବୋଇଲେ ଶୁଣ ରାଜନ
ଇନ୍ଦ୍ର କରିଥିଲେ ମୋତେ ପ୍ରଦାନ
ସନ୍ତକ ରୂପେ ଏହି ଉପହାର
ରହିଅଛି ମୋ ପାଶରେ ତାଙ୍କର
ନ ପାରିବି ତାଙ୍କୁ ଦେଇ,
କ୍ଷମା ମୋତେ କର, ବିନୟ ତୁମର,
ପୂର୍ଣ୍ଣ କରି ନ ପାରଇ ।୧୩।
ରାଜସିକ ଗୁଣ ରାଜାଙ୍କ ଠାରେ
ପ୍ରକାଶ ପାଇଲା କିଛି କ୍ଷଣରେ
କ୍ରୋଧରେ ଅନ୍ଧ ତୁଲ୍ୟ ହୋଇକରି
କହିଲେ ବଳେ ନେବି ଯାଙ୍କୁ ହରି
କରିଲେ ସୈନ୍ୟେ ଆଦେଶ,
ବାନ୍ଧିନେବା ଧର, ନନ୍ଦିନୀକୁ ଯାର,
କରିବ ସେ ଅବା କିସ ।୧୪।

ବଶିଷ୍ଠ ଯାଇ ନନ୍ଦିନୀଙ୍କ ପାଶ
ତୋ ପରେ ମୋର ଅଖଣ୍ଡ ବିଶ୍ୱାସ
ଶକ୍ତିରେ ରାଜାଙ୍କୁ ପାରିବା ପାଇଁ
ମାତା ମୋହର ସେ ସାମର୍ଥ୍ୟ ନାହିଁ
କ୍ଷମତା ଅଛି ତୋହର,
ନିଜକୁ ନିଜେ ହିଁ, ରଖ ମାତା ତୁହି,
ଏହି ନିବେଦନ ମୋର ।୧୫ ।

ନନ୍ଦିନୀ ମାତା ଶରୀରୁ ନିଜର
ସୈନ୍ୟ ସାମନ୍ତ ବିଭିନ୍ନ ପ୍ରକାର
ସୃଷ୍ଟି କଲେ ବିଭିନ୍ନ ଅସ୍ତ୍ର ଶସ୍ତ୍ର
ଯୁଦ୍ଧରେ ହରାଇଲେ ବିଶ୍ୱାମିତ୍ର
ରାଜା ପରାଭବ ପାଇ,
ମନସ୍ତାପେ ଅତି, ରାଜଧାନୀ କତି,
ପହଞ୍ଚିଲେ ଶୀଘ୍ର ଯାଇ ।୧୬ ।

ମନେ ଚିନ୍ତାକଲେ ରାଜ ଶକତି
ବ୍ୟର୍ଥ ଯହିଁ ଅଛି ଋଷିଙ୍କ ସ୍ଥିତି
ମନେ ମନେ ସ୍ଥିର ନିଶ୍ଚିତ ହୋଇ
ନିଜ ପୁତ୍ର ହସ୍ତେ ଶାସନ ଦେଇ
ଗମିଲେ ତପସ୍ୟା ପାଇଁ,
ଘୋର ଜଙ୍ଗଲରେ, ବିରସ ମନରେ,
ଭଗ୍ନ ହୃଦୟକୁ ନେଇ ।୧୭ ।

ଅନେକ ତୀର୍ଥ ଅନେକ କ୍ଷେତ୍ରରେ
ଗମନ କଲେ ଅଶାନ୍ତି ମନରେ
କାହିଁ କେଉଁଠି ଶାନ୍ତି ନ ମିଳଇ
ବନ ଜଙ୍ଗଲ ପର୍ବତ ଭ୍ରମଇ
ଚିତ୍ରୋତ୍ପଳା ଦକ୍ଷିଣରେ
ଆସି ପହଞ୍ଚିଲେ, ଯାହା ସେ ଦେଖିଲେ,
ସ୍ତମ୍ଭିତ ହେଲେ ଚିତ୍ତରେ ।୧୮ ।

ଦୁଇ ପାହାଡ଼ର ମଧ୍ୟ ଦେଶରେ
ଅଛି ଏକ ଉପତ୍ୟକା ସେଠାରେ
ମନ୍ଦ ମନ୍ଦ ସମୀରଣ ବହଇ
ଜଙ୍ଗଲର ଶୋଭା ମନ ମୋହଇ
ଅପୂର୍ବ ଶାନ୍ତି ମନରେ,
ଭରିଲା ହଠାତ୍, ହେଲେ ଆଚମ୍ବିତ,
ରୋମାଞ୍ଚ ହେଲା ଶରୀରେ ।୧୯ ।

ସେଠାରେ ଅଛନ୍ତି ବିଭିନ୍ନ ବୃକ୍ଷ
ଫଳ ସୁମନ ଦିଅନ୍ତି ପ୍ରତ୍ୟକ୍ଷ
ମଧୁଧାର ଆମ୍ର ଓ ସପ୍ତପର୍ଣ୍ଣୀ
ଅଶ୍ୱତ୍ଥ ନିପ ବିଭିତକ ପୁଣି
ନିମ୍ବ ବୃକ୍ଷ ପାଏଶୋଭା,
ଫୁଲ ତରୁ ମାନ, ଦିଶେ ଛନ୍ନ ଛନ୍ନ,
ବନ ଶୋଭା ମନ ଲୋଭା ।୨୦।
ଯେହ୍ନେ ଗନ୍ଧର୍ବମାନେ ଏକ ହୋଇ
ବାଦ୍ୟ ଯନ୍ତ୍ର ସାଥେ ବିଚିତ୍ରା ବାଇ
କରୁ ଅଛନ୍ତି ସଙ୍ଗୀତ ଆସର
ସେପରି ଲାଗେ ପକ୍ଷୀଙ୍କର ସ୍ୱର
ମଧୁର ମନ ମୋହକ,
ଶବ୍ଦ ପକ୍ଷୀଙ୍କର, ଅତ୍ୟନ୍ତ ମଧୁର,
କଳରବ ଯେ ରୋଚକ ।୨୧।
ଭ୍ରମନ୍ତି ଏଥେ ବହୁ ପକ୍ଷୀବର
ପୀକ ଶୁକ କାଠଖୁମ୍ପା ଚକୋର
କୁକୁଟ ଚାତକ ସହ କପୋତ
ମୟୁର ପାରା ହଳଦୀ ବସନ୍ତ
ବୃକ୍ଷ ପରେ ସୁଖେ ବସି,
ସ୍ୱର ଚମତ୍କାର, ଲାଗେ ମନୋହର,
ମନେ ଭରିଦ୍ୟନ୍ତି ଖୁସି ।୨୨।
ଅରୁଣା ଅଙ୍କୋଳା ଆଉ ଜମ୍ବୀର
ଦାଡ଼ିମ୍ବ ମାତୁଲୁଙ୍ଗ ବୀଜପୁର
ଲିଚୁ, ଲେମ୍ବୁ, କଇଥ ପୁଗଫଳ
କଦଳୀ ବନ କଇଁଆ ହେନ୍ତାଳ
ବିଭିନ୍ନ ବୃକ୍ଷେ ଶୋଭିତ,
ଛାୟା ଫଳପ୍ରଦ, ଏ ସବୁ ଉଦ୍ଭିଦ,
ବନ ଲାଗଇ ବିଚିତ୍ର ।୨୩।
ଲତାବିତାନ ପୁଣି ଗୁଳ୍ମ ବର
ନେତ୍ରକୁ ଦିଶେ ଅତି ଚମତ୍କାର
ରହିଛି ତହିଁ ଭିନ୍ନ ଜଳାଶୟ
ସୃଷ୍ଟଇ ବନେ ସୌନ୍ଦର୍ଯ୍ୟ ବିସ୍ମୟ
ତଡ଼ାଗ ଓ ପୁଷ୍କରିଣୀ,
ସକଳ ଶୋଭିତ, ମନ ଆନନ୍ଦିତ,
ବାପି ଜଳାଶୟ ପୁଣି ।୨୪।

ଜଳରେ ସ୍ଥଳରେ ଆଉ ଆକାଶେ
ବିହଙ୍ଗମାନେ ନାଚନ୍ତି ବିଶେଷେ
କୂଜନ ନର୍ତ୍ତନ ରୂପ ସବୁରି
ପକାଏ ମନକୁ ସ୍ୱତଃ ଆବୋରି
ଜଳସ୍ଥଳେ ପୁଷ୍ପ ରାଜି,
ବର୍ଣ୍ଣିବ ବା କିଏ, ମନ ମୋହେ ଯିଏ,
ଏକୁ ଏକ ବିଧି ଖଞ୍ଜି ।୨୫ ।
ସେହି ଅରଣ୍ୟରେ ବ୍ୟାଘ୍ର ହରିଣ
ଭ୍ରମୁଥିଲେ ହୋଇ ନିର୍ଭୟ ମନ
ଶଶକ ଶୃଗାଳ ଏକ ସ୍ଥାନରେ
ଜଳପାନ କରନ୍ତି ନିର୍ଭୟରେ
ହୃଦୟରେ ଶୀତଳତା,
ଗଲା ତାଙ୍କ ଭରି, ପ୍ରଭାବେ ତାହାରି,
ସ୍ଥାନର ଏ ମହାନତା ।୨୬ ।
ପାହାଡ଼ର ସୌମ୍ୟ ପାଦ ଦେଶରେ
ରହିଥିବା ଏକ ଗୁମ୍ଫା ମଧ୍ୟରେ
ଘଣ୍ଟ ଘଣ୍ଟା ଘଣ୍ଟି ଶବ୍ଦ ଶୁଭଇ
ଓଁ ନମଃ ଶିବାୟ ଶବ୍ଦ ଗୁଞ୍ଜଇ
ଦିବ୍ୟ ପୁରୁଷ କେତେକ,
ପୂଜୁଛନ୍ତି ଶିବେ, ପ୍ରଭୁ ସଦାଶିବେ,
ସେବନ୍ତି ହୋଇ ସେବକ ।୨୭ ।
ଯାଇ ଲିଙ୍ଗଙ୍କର କଲେ ଦର୍ଶନ
ଲଡୁ ଆକାରେ ଦିଶନ୍ତି ଶୋଭନ
ଦର୍ଶନେ ବୈରଭାବ ଲୋପ ପାଇ
ମନେ ଅଖଣ୍ଡ ଶାନ୍ତି ବିରାଜଇ
ପ୍ରଭୁଙ୍କର ପ୍ରଭାବରେ,
ଆନନ୍ଦ ଉତ୍ପନ୍ନ, ହେଲା ତାଙ୍କ ମନ,
ଶୀତଳତା ହୃଦୟରେ ।୨୮ ।
ଆଶ୍ରମ ନିର୍ମାଣି ଅନତୀ ଦୂରେ
ରହିଲେ ଆନନ୍ଦେ ସେହି ସ୍ଥାନରେ
ପାଶରେ ରହିଛନ୍ତି ବନ ଦେବୀ
ଝାଡ଼େଶ୍ୱରୀ ମାତା ମହା ପ୍ରଭାବୀ
ପାଖରେ ବହଇ ଝର,
ଭକତି ମନରେ, ରହିଣ ନିଷ୍ଠାରେ,
ଡାକିଲେ ଶିବ ଶଙ୍କର ।୨୯ ।

ଶିବଙ୍କ ସେବା କଲେ କିଛି ଦିନ
ଆଶୁତୋଷ ତୋଷ ହୋଇଣ ମନ
ସାକ୍ଷାତେ ହୋଇ କରି ଆବିର୍ଭୂତ
ବୋଲିଲେ ହେ ରାଜର୍ଷି ବିଶ୍ୱାମିତ୍ର
ମନସ୍କାମନା ତୋହର,
ଅଚିରେ ପୂରଣ,କରିବି ବହନ,
ପ୍ରକାଶ ସମ୍ମୁଖେ ମୋର ।୩୦ ।
ଆନନ୍ଦରେ ଗଦ୍ଗଦ ବିଶ୍ୱାମିତ୍ର
ନେତ୍ରୁ ବହଇ ଅଶ୍ରୁ ଅବିରତ
ରୋମାଞ୍ଚିତ ହେଲା ସାରା ଶରୀର
ସ୍ୱେଦରେ ଆସନ ହୋଇଲା ଆର୍ଦ୍ର
ମୁଖରୁ ତାଙ୍କର ସ୍ୱତଃ,
ହେଲା ଉଚ୍ଚାରିତ, ଭାବେ ଅବାରିତ,
ଶିବ ଶଙ୍କରଙ୍କ ସ୍ତୋତ୍ର ।୩୧ ।

## ବିଶ୍ୱାମିତ୍ରଙ୍କ ଶିବ ସ୍ତୋତ୍ର

ନମୋ ଲଡୁକେଶ ବିଭୁ ବ୍ୟାପକ
ନମୋ ନକୁଳେଶ କ୍ଳେଶହାରକ
ହେ ଈଶାନ ବ୍ରହ୍ମବେଦ ସ୍ୱରୂପ
ହେ ଭେଦ ବିହୀନ ଆକାଶ ରୂପ
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୨ ।
ଓଁକାର ମୂଳ ତୁମେ ନିରାକାର
ବାଣୀ ଜ୍ଞାନ ଇନ୍ଦ୍ରିୟରୁ ବାହାର
ତୁରୀୟସ୍ଥ କୃପାଳୁ ବିକରାଳ
ହେ ଗୁଣାଗାର ମହାକାଳ କାଳ
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକରମୋତେ,
ପାଦେ କରୁଛି ନମନ ।୩୩ ।

ତୁଷାରାଦ୍ରି ପ୍ରାୟ ଗୌର ଗମ୍ଭୀର
କୋଟି କାମଦେବ ପ୍ରାୟ ଶରୀର
ମସ୍ତକେ ଶଶାଙ୍କ ଫଣୀ କଣ୍ଠରେ
ନମୋଭସ୍ମାଙ୍ଗ ଯା'ର ଗଙ୍ଗାଶିରେ
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୪ ।

ଗିରୀଶ ଦୟାଳୁ ପ୍ରସନ୍ନାନନ
ସୌମ୍ୟ ଭୃକୁଟୀ ବିଶାଳ ନୟନ
ତେଜସ୍ୱୀ ଶ୍ରେଷ୍ଠ ବ୍ୟାଘ୍ର ଚର୍ମଧର
ସର୍ବନାଥ ସର୍ବପ୍ରିୟ ଈଶ୍ୱର
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୫ ।

ଶୂଳପାଣି ମହାଦେବ ପ୍ରଚଣ୍ଡ,
ଗଳେ ମୁଣ୍ଡମାଳ ଅଜ ଅଖଣ୍ଡ
ହେ ତ୍ରିଶୂଳୀ କୋଟି ଭାସ୍କର ଜ୍ୟୋତି
ତ୍ରିଶୂଳ ନାଶକ ଭବାନୀପତି
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୬ ।

କାଳାତୀତ ପ୍ରଭୁ କଳ୍ପାନ୍ତକାରି
ସଜ୍ଜନେ ସୁଖଦାତା ମାନସାରି
ଚିଦାନନ୍ଦ ମୋହାରି ତ୍ରିପୁରାରି
ପ୍ରସନ୍ନ ହୁଅ ହେ ପ୍ରଭୁ କାମାରି
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୭ ।

ଯଦି ନ ଭଜେ ଭୁତ ଭୁତାଧିପ
ଶାନ୍ତି ନ ମିଳଇ ମିଳେ ସନ୍ତାପ
ଜାଣେନା ଯୋଗ ଧ୍ୟାନ ପୂଜା ଜପ
ନମୋ ଶମ୍ଭୁ ନାଶ ସଂସାର ତାପ
ଜାଣେନା ପ୍ରଭୁ ଅର୍ଚ୍ଚନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୮ ।

ହେ ଆଦି ପିତା ତୁମେ ଆଦିଗୁରୁ
ବିଶ୍ୱସଂଚାଳ ଡମ୍ବରୁ ଶଙ୍କରୁ
ପତିତଜନେ ପ୍ରଦାନେ ଶରଣ
ନମୋସଦୋଦ୍ୟତ ନନ୍ଦିବାହନ
ଜାଣେନା ଜପ ବା ଧ୍ୟାନ,
ହେ ଜଗତ ପତେ, ରକ୍ଷାକର ମୋତେ,
ପାଦେ କରୁଛି ନମନ ।୩୯ ।

ବିଶ୍ୱାମିତ୍ର ସ୍ତୋତ୍ର କରି ଶ୍ରବଣ
ପ୍ରଫୁଲ୍ଲିତ ହୋଇଲେ ଭଗବାନ
ମନବାଞ୍ଛା ତାଙ୍କ ପୂରଣ କରି
ଅନ୍ତର୍ଦ୍ଧାନ ହୋଇଲେ ତ୍ରିପୁରାରି
ନିସ୍ତରିଲି ନିସ୍ତରିଲି,
କୃତଜ୍ଞତା ସ୍ୱରେ, ରାଜର୍ଷି ଉଚ୍ଚାରେ,
ପ୍ରଭୁ ମୁଁ ଧନ୍ୟ ହୋଇଲି ।୪୦।





# ପଞ୍ଚମ ପ୍ରକାଶ

(ରାବଣର କାମନା ଲିଙ୍ଗ ଉତ୍ପାଟନ ପ୍ରଚେଷ୍ଟା ଓ
ପରାଭବ ପ୍ରାପ୍ତି ବର୍ଣ୍ଣନ)

ଶୁଣ ସୁଜ୍ଞ ଜନେ ମନକୁ ଦେଇ
ବର୍ଣ୍ଣିବା ରାବଣ କଥା ବୁଝାଇ
ରାବଣ ଅଟେ ତାମସିକ ଭକ୍ତ
ପୂଜା ତା ଦିଅଇ ପ୍ରଭୁଙ୍କୁ କଷ୍ଟ
ତଥାପି ପ୍ରଭୁ ଶୁଣନ୍ତି,
ପୂଜା ପ୍ରଭାବରେ, ଆସୁରୀ ମତରେ,
ପ୍ରଭୁ ବି ବାଧ ହୁଅନ୍ତି । ୧ ।
ପୂର୍ବୁ ଥିଲେ ପ୍ରଭୁ ଏହି ସ୍ଥାନରେ
ପୂଜନ୍ତି ଦେବେ ଆସି ଗୁପତରେ
କେତେ ଯୁଗ ଅତିକ୍ରାନ୍ତ ହୋଇଲା
ତ୍ରେତୟା ଯୁଗ ଆସି ପହଞ୍ଚିଲା
ଭାବେ ମନେ ଦଶଶିର,
ତପସ୍ୟା କରିଣ, ଶିବକୁ ତୋଷିଣ,
ଶିବେ ନେବ ଲଙ୍କାପୁର ।୨ ।
କୈଳାସେ କଠିନ ତପସ୍ୟା କରି
ତୋଷିଲା ତ୍ରିପୁରାସୁର ଅରି
ମାଗିଲା ପ୍ରଭୁ ମୋତେ ଦିଅ ବର
କାମନା ଲିଙ୍ଗ ନେବି ଲଙ୍କାପୁର
ପ୍ରଭୁ କଲେ ଆଶୀର୍ବାଦ,
କହିଲେ ମର୍ତ୍ତ୍ୟରେ, ଯେତେ ଯେଉଁଠାରେ,
ବାଛିନିଅ ହୋଇ ମୋଦ ।୩ ।
ଡକାଇ ରାବଣ ନାରଦ ମୁନି
ପୁଛଇ କୁହ ହେ ତ୍ରିକାଳ ଜ୍ଞାନୀ
ମର୍ତ୍ତ୍ୟରେ ଏମନ୍ତ ଅଛି କି ସ୍ଥାନ
ଯହିଁ ପୂଜା ପାଆନ୍ତି ଭଗବାନ
କାମନା ଲିଙ୍ଗ ରୂପରେ,
ବାଞ୍ଛାକଲେ ଯାହା, ମିଳଇ ଯେ ତାହା,
ମନାସିଲେ ତା ପାଖରେ ।୪ ।

ନାରଦ କହିଲେ ବିଶ୍ରବା ସୁତ
ଅଟଇ ଏକଥା ଅତି ଗୁପତ
ଭାରତବର୍ଷର ଉତ୍କଳ ଦେଶେ
ନବଦୁର୍ଗ ରାଜ୍ୟେ ଭଣ୍ଡାର ପାଶେ
ଅଛନ୍ତି ଲିଙ୍ଗ ଗୋଟିଏ,
ପୂର୍ଣ୍ଣଚନ୍ଦ୍ର ପ୍ରାୟ, ସ୍ୱରୂପେ ବିଜୟ,
ଛତ୍ରାକାରେ ଶୋଭାପାଏ ।୫ ।
ନାରଦ ବାକ୍ୟକୁ ଶୁଣି ତତ୍‌କ୍ଷଣେ
ରାବଣ ଚଢ଼ିଲା ପୁଷ୍ପକ ଯାନେ
ପହଁଚିଲା ଭଣ୍ଡାର ଶୈଳେ ଯାଇ
ଶିବାର୍ଚ୍ଚନେ ଦେବେ ବ୍ୟସ୍ତ ଅଛନ୍ତି
ଦେଖି ତା'ରେ ଭୟ ପାଇ,
ଜୀବନ ବିକଳେ, ଦେବତା ସକଳେ,
ସ୍ୱପୁରେ ଗଲେ ପଳାଇ ।୬ ।
ପୂଜିଲା ବସି ମନେ ହର୍ଷ ହୋଇ
ଫୁଲ ଫଳ ଗନ୍ଧ ଚନ୍ଦନ ଦେଇ
ଅଭିଷେକ କଲା ନୀର କ୍ଷୀରରେ
ତିଳ ତୈଳ ମନ୍ଦାକିନୀ ଜଳରେ
ଭକ୍ତିରେ ବିଭୋର ହୋଇ,
ମହାଦେବେ ଦର୍ପେ, ବିଲ୍ୱପତ୍ର ଅର୍ପେ,
ଭାବେ ତାଣ୍ଡବ ଗାଆଇ ।୭ ।

## ରାବଣଙ୍କ ଶିବ ସ୍ତବ

ଜଟାରୁ ତୁମ ବହିଣ ସଲିଳ
ପବିତ୍ର କରୁଅଛି କଣ୍ଠ ସ୍ଥଳ
ଗଳାରେ ଶୋହନ୍ତି ଭୁଜଙ୍ଗ ହାର
ଡମଡମ ଡମ ଡମ୍ବରୁ ସ୍ୱର
ବ୍ୟାପଇ ସାରା ସଂସାର,
ନାଚୁଛ ତାଣ୍ଡବ, ଭଗବାନ ଶିବ,
ତୁମ ପାଦେ ନମସ୍କାର ।୮।
ଅଲୌକିକ ଗଂଗା ପ୍ରବହମାନ
ଧାରାରେ ଜଟା ଯାହାର ଶୋଭନ
ଲହଡ଼ି ଖେଳଇ ନୀର ଜଟାରେ
ଲଲାଟ ଚମକେ ଅଗ୍ନି ଶିଖାରେ
ଅର୍ଦ୍ଧଚନ୍ଦ୍ର ଆଭୂଷଣ,
ଶିରରେ ତୁମର, ଆହେ ମହେଶ୍ୱର,
ପାଦେ ତୁମର ନମନ ।୯ ।

ଅଦଭୁତ ବ୍ରହ୍ମାଣ୍ଡ ଯା'ର ମନେ
କଟାକ୍ଷେ ଆପଦ ଯା ନିୟନ୍ତ୍ରଣେ
ସର୍ବବ୍ୟପୀ, ପାର୍ବତୀ ଯା ଅର୍ଦ୍ଧାଙ୍ଗ
ତ୍ରିଲୋକ ଅମ୍ବର ଧରେ ଯେ ଅଙ୍ଗ
ସେହି ପ୍ରଭୁ ମହେଶ୍ୱର,
ଆନନ୍ଦ ସ୍ୱରୂପ, ପ୍ରଭୁ ବିଶ୍ୱରୂପ,
ପାଦେ ତାଙ୍କ ନମସ୍କାର ।୧୦।
ଜଟା ଓ ଭୁଜଙ୍ଗ ରଙ୍ଗ ପିଙ୍ଗଳ
ଆଲୋକେ ରଞ୍ଜିତ ମୁଖ ମଣ୍ଡଳ
ଦିଗ୍ଦେବୀମାନେ ଦିଶନ୍ତି ସୁନ୍ଦର
ମଦମତ୍ତ ହସ୍ତୀ ଚର୍ମ ଅମ୍ବର
ସର୍ବଜୀବ ରକ୍ଷାକାରୀ,
ଆହେ ମୃତ୍ୟୁଞ୍ଜୟ, ହେଉତୁମ୍ଭ ଜୟ,
ପାଦେ ପ୍ରଣମେ ତୁମରି ।୧ ୧ ।
ଲାଲ ଭୁଜଙ୍ଗେ ବନ୍ଧା ତୁମ ଜଟା
ମୁକୁଟେ ଶୋଭଇ ଅର୍ଦ୍ଧ ଚନ୍ଦ୍ରଟା
ସୁମନ ରେଣୁରେ ପାଦର ବର୍ଣ୍ଣ
ଦିଶଇ ନୟନକୁ ଶୋଭାବନ
ବିଷ୍ଣୁ ଇନ୍ଦ୍ରାଦି ଅମର,
ପଡ଼ି ରେଣୁ ଶିରେ, ଧନ୍ୟ ତାଙ୍କୁ କରେ,
ନମେ ସେ ପ୍ରଭୁ ପୟରେ ।୧ ୨ ।
ଚଉଦ ଭୁବନ ସ୍ୱାମୀଙ୍କ ବନ୍ଦ୍ୟ
ଅର୍ଦ୍ଧଚନ୍ଦ୍ର ଶିରେ ଦିଶେ ଅନିନ୍ଦ୍ୟ
ଲଲାଟାଗ୍ନିରେ କାମଦେବ ନାଶ
ଅଲୁଳାୟିତ ଜଟା ଦିଏ ଯଶ
ନୀଳକଣ୍ଠ ପଞ୍ଚାନନ,
ସ୍ୱରୂପ ତୁମର, ଦିଶଇ ସୁନ୍ଦର,
ପାଦେ କରୁଛି ନମନ ।୧ ୩ ।
ପଞ୍ଚ ଶାୟକଧାରୀ ନାଶକାରୀ
କରାଳ ଭାଲ ପଟିକା ଯାହାରି
ପର୍ବତ ରାଜାର ପୁତ୍ରୀ ପାର୍ବତୀ
ପ୍ରିୟ ତାଙ୍କର ଯେ ଅଟନ୍ତି ଅତି
ତ୍ରିନେତ୍ର ଭସ୍ମାଙ୍ଗ ଧାରୀ,
ପ୍ରଣବ ସ୍ୱରୂପ, ଆହେ ବ୍ରହ୍ମରୂପ,
ପାଦେ ପ୍ରଣମେ ତୁମରି ।୧ ୪ ।

ଘନ କୃଷ୍ଣ ନବଘନେ ଆବୃତ
ଅମାବାସ୍ୟାର କଳା ଅର୍ଦ୍ଧରାତ୍ର
ନୀଳକଣ୍ଠଟି ଦିଶଇ ସୁନ୍ଦର
ଭାରା ଉଠାଏ ଯିଏ ସଂସାରର
ଚନ୍ଦ୍ରମା ଶୋଭା ଯାହାର,
ମନ୍ଦାକିନୀ ଶିରେ, ବିରାଜେ ଜଟାରେ,
ତାଙ୍କ ପାଦେ ନମସ୍କାର ।୧୫ ।

ସ୍ତବ ଶୁଣି ଶିବ ହୋଇଲେ ଖୁସି
ଶୂନ୍ୟବାଣୀ କଲେ ରାବଣେ ଆସି
ବିଶ୍ରବା ନନ୍ଦନ ପୂଜା ତୋହର
ମନେ ଭରିଛି ମୋ ହର୍ଷ ଅପାର
କହ କିସ ଚାହୁଁ ତୁହି,
ମନସାଧ ତୋର, ପୂରାଇବି ବର,
ଦେବି ତତକ୍ଷଣେ ମୁହିଁ ।୧୬ ।

ମହା ଆନନ୍ଦେ ନିକଷା ନନ୍ଦନ
ଭକତି ଭରେ କଲା ନିବେଦନ
ଚାଲ ପ୍ରଭୁ ଲଙ୍କାପୁର ସାଥିରେ
ନେଇ ସ୍ଥାପିବି ମୋର ସ୍ୱର୍ଣ୍ଣପୁରେ
ତଥାସ୍ତୁ ଶୁଣି ତାଙ୍କର,
ଧରିଲା ଜାବୁଡ଼ି, ନେବାକୁ ଉପାଡ଼ି,
ଲିଙ୍ଗଙ୍କୁ କରି ଜୋଅର ।୧୭ ।

ଅହଂକାର ତାର ପ୍ରଭୁ ଜାଣିଲେ
ମହାମେରୁ ଗରୁ ଅଧିକ ହେଲେ
ସମସ୍ତ ପ୍ରଚେଷ୍ଟା ହେଲା ବିଫଳ
ଛାଡ଼ି ପଳାଇଲା ହୋଇ ବିକଳ
ରହିଲେ ଲିଙ୍ଗ ସେ ସ୍ଥାନେ,
ଦେବତା ଦାନବ, ପୂଜୁଥାନ୍ତି ଶିବ,
ଆସିଣ ସେ ପୁଣ୍ୟ ବନେ ।୧୮ ।

ପ୍ରଭୁ ମୋ ଭକତି ରଙ୍କ ଅଟନ୍ତି
ଭକତେ ସର୍ବସ୍ୱ ଦେଇ ପାରନ୍ତି
ଅହଂକାର ଅଟେ ତାଙ୍କ ଅଇରି
ସହି ନ ପାରନ୍ତି ସିଏ କାହାରି
ଲଡୁବାବା ଭୋଳେଶ୍ୱର,
ପାଦରେ ତାଙ୍କର, ମନଟି ମୋହର,
ରହିଥାଉ ନିରନ୍ତର ।୧୯ ।

# ଷଷ୍ଠ ପ୍ରକାଶ

(ବାଣାସୁରର ଚରିତ ଓ କାମନା ଲିଙ୍ଗ ଉତ୍ପାଟନ ପ୍ରଚେଷ୍ଟା ଓ ପରାଭବ ପ୍ରାପ୍ତି ବର୍ଣ୍ଣନ)

ତ୍ରେତୟା ଯାଇ ଆସିଲା ଦ୍ୱାପର
ଏ ରାଜ୍ୟେ ରାଜା ହେଲା ବାଣାସୁର
ଭଣ୍ଡାର ପାଶେ କୁସୁମୀ କୂଳରେ
ଗଡ଼ କରିଥିଲା ଢିପ ଉପରେ
ଅସୁରଢିପା ତା ନାମ,
ପୂଜାକରେ ନିତି, ପାର୍ବତୀଙ୍କ ପତି,
ଶିବଲିଙ୍ଗ ମନୋରମ ।୧ ।
ଗୁମ୍ଫା ଥିଲା ଗିଲଲଟୀ ମଧ୍ୟରେ
ଲିଙ୍ଗ ଥିଲେ ସେହି ଗୁମ୍ଫା ଭିତରେ
ଶିବ ଆରଧନା ସେଠାରେ କରି
ବଳବାନ ସିଏ ବରେ ତାଙ୍କରି
ସହସ୍ର ବାହୁ ବରରେ,
ପାଇଣ ଅସୁର, ମହାବଳୀୟାର,
ହଙ୍ଗାମା ମହୀରେ କରେ ।୨ ।
କନ୍ୟାରତ୍ନଟିଏ ଥିଲା ତାହାର
ଅନିନ୍ଦ୍ୟ ସୁନ୍ଦରୀ ରୂପ ଗୁଣର
ନାମଟି ତା ଉଷା,ଉଷା ପରିକା
କୋମଳାଙ୍ଗୀ ସେହୁ ଚାରୁ ଲତିକା
ବୟସ ହେଲା ଷୋହଳ,
ଯୌବନ ଭାବନା, କଲା ଆନମନା,
ଖୋଜଇ ସାଥିର ମେଳ ।୩ ।
ବିଧିର ଥିଲାଏପରି ବିଧାନ
ଦେଖିଲା ରାତିରେ ଉଷା ସ୍ୱପନ
ଅନିର୍ବଚନୀୟ ଯୁବାପୁରୁଷ
ଶୋଇଛି ପଲଙ୍କେ ତାହାରି ପାଶ
ପରଶ ତାହାର ପାଇ,
ପରଶ ଖୋଜଇ, ହା ହୁତାଶ ହୋଇ,
ନିଦରୁ ଉଠି ଖୋଜଇ ।୪ ।

ଚିତ୍ରଲେଖା ନାମେ ସହି ତାହାର
ଜାଣିଲା ବିଚିତ୍ର ଯା ବ୍ୟବହାର
ଚତୁରୀ ଚତୁରେ ଖୋଲି ତା ମନ
ଜାଣିଲା ଉଷାର ଦୁଃଖ କାରଣ
ଆଙ୍କିଲା ବିଭିନ୍ନ ଚିତ୍ର,
ଯକ୍ଷ ରକ୍ଷ ସୁର, ଗନ୍ଧର୍ବ କିନ୍ନର,
ଯେତେ ଥିଲେ ରାଜପୁତ୍ର ।୫ ।
ସବୁ ଚିତ୍ର ଦେଖି ନାସ୍ତି କରିଲା
ଅନିରୁଦ୍ଧ ଚିତ୍ର ଯେବେ ଦେଖିଲା
ସହିରେ ଏହି ମୋହର ମନ ଚୋର
ଆସିଥିଲା ଏହି ମୋର ସ୍ୱପ୍ନର
ଜଳାଉ ଅଛି ଏ ମୋତେ,
ଚିତ୍ରଲେଖା ଦେଖି, କହିଲା ହେ ସଖି,
ଚିନ୍ତା କାହିଁ ପାଇଁ ଏତେ ।୬ ।
ମୁହିଁ ତାକୁ ସହି ଖୋଜି ଆଣିବି
ତୋ ପାଦ କିଙ୍କର କରି ଥୋଇବି
ଯାଉଅଛି କହି ସେ ଚଳିଗଲା
ଦ୍ୱାରକା ପୁରୀରେ ଯାଇ ମିଳିଲା
ଅନିରୁଦ୍ଧେ ମନ୍ତ୍ର କରି,
ନିଦ୍ରାରେ ତାହାକୁ, ଉଷାର କକ୍ଷକୁ,
ଆଣିଲା ଅଚେତ କରି ।୭ ।
ଅନିରୁଦ୍ଧକୁ ଦେଖି ଉଷା ବାଳୀ
ଖୁସି ତାହାର ନ ହୁଅଇ କଳି
ସେବାରେ ତା' ଲଗାଇଲା ନିଜକୁ
ପତି ବୋଲି ମନେ ବରିଲା ତାକୁ
ଅନିରୁଦ୍ଧ ନିଦ୍ରା ଯେବେ,
ଭାଙ୍ଗିଣ ଉଠିଲା, ଉଷାକୁ ଦେଖିଲା,
ଆଶ୍ଚର୍ଯ୍ୟ ହୋଇଲା ତେବେ ।୮ ।
ଉଷା ତାକୁ ସବୁ ଦେଲା ବୁଝାଇ
ସୌନ୍ଦର୍ଯ୍ୟେ ତାର ବିମୋହିତ ହୋଇ
ଗାନ୍ଧର୍ବ ରୀତିରେ ବିବାହ କଲେ
ରତିରଙ୍ଗେ ଦୁହେଁ ଦିନ କାଟିଲେ
ଜାଣି ଏହା ବାଣାସୁର,
ଅନିରୁଦ୍ଧେ ନେଇ, ବନ୍ଦୀକରି ଥୋଇ,
ଦେଲା ତାକୁ ବନ୍ଦୀ ଘର ।୯ ।

ଏହା ଯେବେ ଜାଣିଲେ ବାସୁଦେବ
ଡକାଇଲେ ସବୁ ବୀର ଯାଦବ
ପୌତ୍ର ଉଦ୍ଧାରେ ଯୁଦ୍ଧକୁ ବାହାର
ପହଞ୍ଚିଲେ ବାଣାସୁରର ପୁର
ସମରେ ତା ଅହଂକାର
କରିବାକୁ ନାଶ, କାଟିଣ ସହସ୍ର,
ହସ୍ତ ହୋଇଲେ ବାହାର ।୧୦।
ଯୁଦ୍ଧ ହୋଇଲା ପ୍ରବଳୁ ପ୍ରବଳ
ବାଣାସୁର ସାଥେ ଯାଦବ ବଳ
କୃଷ୍ଣଙ୍କ ସାଥେ ବାଣା ବା କେତେକ
ମରିଲେ ତାହାର ସୈନ୍ୟ ଅନେକ
ବାଣାର ଅନେକ ହସ୍ତ,
କାଟି ପକାଇଲେ, ପରାଭବ ଦେଲେ,
ମାରିବାକୁ ସମୁଦ୍ୟତ ।୧୧।
ଏ ସମୟେ ଶିବ ଉଭା ହୋଇଣ
କୃଷ୍ଣଙ୍କୁ କହିଲେ ହେ ଭଗବାନ
ଏ ମୋର ଭକତ ପ୍ରିୟ ଅତ୍ୟନ୍ତ
ଛାଡ଼ିଦିଅ ଚାରିବାହୁ ଅନ୍ତତ
ବଞ୍ଚି ରହୁ ସେ ସଂସାରେ,
ମନା କଲା ସିନା, ଦେବାକୁ ତା କନ୍ୟା,
ତୁଚ୍ଛା ମିଥ୍ୟା ଅହଂକାରେ ।୧୨।
ଦେବାକୁ ବିଭା ବାଣାକୁ କହିଲେ
ଅନିରୁଦ୍ଧ ସହ ଉଷାକୁ ଭଲେ
କୃଷ୍ଣ ହୋଇବେ ବାନ୍ଧବ ତୋହର
ସମ୍ମାନ ମିଳିବ ତୋତେ ଅପାର
କଥା ମାନି ବାଣାସୁର,
କରିଲା ସେପରି, ପ୍ରଭୁ ଯେଉଁ ପରି,
କହିଲେ ତାହା ଆଗର ।୧୩।
ଗ୍ଳାନିରେ ଛାଡିବ ବୋଲିଏ ସ୍ଥାନ
ନେଇ ଶିବ ଶଙ୍କରଙ୍କ ଶରଣ
ମାଗିଲା ଅନୁମତି ଯିବା ପାଇଁ
ବିନୟ ହୋଇ ପ୍ରଭୁଙ୍କୁ କହଇ
ପ୍ରଭୁ ତୁମେ ଦୟାକର,
ନେବି ମୁଁ ସାଥିରେ, ପୂଜିବି ଭକ୍ତିରେ,
କାମନା ଲିଙ୍ଗ ତୁମର ।୧୪।

ପ୍ରଭୁ କହିଲେ ତୁ ନେବୁ ତ ନେବୁ
ତଳେ କେବେ କେଉଁଠି ନ ଥୋଇବୁ
ରଖିବୁ ତଳେ ଯହିଁ ତହିଁ ଥିବି
କେବେ ହେଲେ ଆଉ ମୁଁ ନ ଘୁଞ୍ଚିବି
କଥା ମାନି ବାଣାସୁର,
ଲିଙ୍ଗ କାନ୍ଧେ ଧରି, ଗୁମ୍ଫାରୁ ବାହାରି,
ମୁଦିଲା ଗୁମ୍ଫାର ଦ୍ୱାର ।୧୫ ।

ଗୁମ୍ଫା ଦୁଆର ଯେବେ ବନ୍ଦ କଲା
ଲିଙ୍ଗଙ୍କୁ ସଧିରେ ତଳେ ଥୋଇଲା
ପୁଣି ଯେବେ ଉଠାଇଲା ନେବାକୁ
ଆଉ ଉଠେଇ ନ ପାରିଲା ତାଙ୍କୁ
ଗଲା ଚାଲି ଦୁଃଖୀ ମନେ,
ସେହି କାଳୁ ପ୍ରଭୁ, ଛତ୍ରାକାର ଶମ୍ଭୁ,
ରହି ଅଛନ୍ତି ସେ ସ୍ଥାନେ ।୧୬ ।





# ସପ୍ତମ ପ୍ରକାଶ

(ନକୁଳ କନ୍ଧ ଓ ବାଘ ଚରିତଏବଂ ମହେଶ୍ୱରଙ୍କ ଆବିର୍ଭାବ ବର୍ଣ୍ଣନ)

ଏପରି ଅନେକ ବରଷ ଗଲା
କଳିକାଳ ଆସି ପ୍ରବେଶ ହେଲା
ଲଙ୍ଗୁଳି କନ୍ଧ ଏହି ଅଞ୍ଚଳରେ
ରହିଲେ ଭଣ୍ଡାର ତଳ ସାହିରେ
କନ୍ଧସାହି ନାମ ତାର,
ବଣୁ ଫଳମୂଳ, ଆଣିଣ ସକଳ,
ବଞ୍ଚନ୍ତି ଯେ ଯାହା ପୁର ।୧ ।
ଆହାର ଖୋଜିବା ନିମନ୍ତେ ଦିନେ
ନକୁଳ କନ୍ଧ ବାହାରିଲା ବନେ
ବୁଲିବୁଲି ବନେ ଦିନ ସରିଲା
ଫଳମୂଳ ଶିକାର ନ ପାଇଲା
ସନ୍ଧ୍ୟା ହେଲା ରତରତ,
ନକୁଳ ଦୁଃଖରେ, ଭାବଇ ମନରେ,
ଫେରିବ ହୋଇ ବିରତ ।୨ ।
ମନ ଦୁଃଖେ ଗୃହେ ଫେରିବା ବେଳେ
ଶୁଣି ଶାର୍ଦ୍ଦୁଳ ଗର୍ଜନ ସେ କାଳେ
ଭୟେ ଥରଇ ତାହାର ଶରୀର
ଧାଇଁ ଚଢ଼ିଲା ଏକ ତରୁବର
ବୃକ୍ଷ ତଳେ ବ୍ୟାଘ୍ର ବସି,
ରହିଲା ଅନାଇଁ, ଖାଇବାର ପାଇଁ,
ତତକ୍ଷଣେ କାହୁଁ ଆସି ।୩ ।
ବ୍ୟାଘ୍ର ତଳେ ଗଛ ପରେ ନକୁଳ
ନକୁଳ ନ ପାଇଲା ଥଳକୁଳ
ବ୍ୟାଘ୍ର ସୁନିଶ୍ଚିତ ଆଜି ଖାଇବ
ଭାବେ ଜୀବନ କେମ୍ନେ ବଞ୍ଚାଇବ
ଈଶ୍ୱର କରେ ସ୍ମରଣ,
ଆହେ ଭଗବାନ, ରଖ ମୋର ପ୍ରାଣ,
ଅଶରଣର ଶରଣ ।୪ ।

କାଳେ ନିଦ ଆସିଯିବ ଆଖିରେ
କାର୍ଯ୍ୟବ୍ୟସ୍ତ ରଖିବାକୁ ଶରୀରେ
ପତ୍ର ଗୋଟିଏ ଗୋଟିଏ ଛିଣ୍ଡାଇ
ପକାଏ ତଳେ ଆନମନା ହୋଇ
ପ୍ରହରକୁ ଯେ ପ୍ରହର,
ତିନୋଟି ପ୍ରହର, କଟିଲା ରାତିର,
ହେଲା ଚତୁର୍ଥ ପ୍ରହର ।୫ ।

ପ୍ରଭୁଙ୍କ ଅପୂର୍ବ ଲୀଳାକୁ ଦେଖି
ବୃକ୍ଷଟି ଥିଲା ଏକ ବିଲ୍ୱବୃକ୍ଷ
ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ ରାତି
ଥିଲା ସେହି ରାତ୍ରୀଟି ଶିବରାତ୍ରୀ
ବିଲ୍ୱପତ୍ର ପଡ଼େ ଯହିଁ,
କୂଳେ ଝରଣାର, ଲିଙ୍ଗ ଛତ୍ରାକାର,
ଜ୍ୟୋତି ର୍ଲିଙ୍ଗ ଅଟେ ସେହି ।୬ ।

ହଠାତ୍ ବାଘ ଗଲା ଅପସରି
ଉଭା ହେଲେ ପ୍ରଭୁ ତ୍ରିଶୂଳଧାରୀ
ଆଲୋକରେ ପୂରି ଗଲା କାନନ
ସୁଗନ୍ଧ ବହି ଆଣିଲା ପବନ
ଆଶ୍ଚର୍ଯ୍ୟ ଚକିତ ହୋଇ,
କିଏ ପ୍ରଭୁ ତୁମେ, ପାଦରେ ପ୍ରଣମେ,
ଆନନ୍ଦେ ସ୍ତବ କରଇ ।୭।

## ନକୁଳଙ୍କ ଶିବ ସ୍ତବ

ନମସ୍ତେ ଆହେ ପ୍ରଭୁ ଭଗବାନ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡର ଜୀବନ
ପ୍ରଭୁ ତୋର ମହିମା ଚିଦାତ୍ମକ
ଅନାଦି ପୁରୁଷ ତୁହି ବିବେକ
ଆଦି ବୀଜ ତୁ ଜୀବର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୮ ।

ଯାହାର ଦେହରେ ଏ ବିଶ୍ୱ ବସେ
ଯା ତହୁଁ ଏ ସାରା ବିଶ୍ୱ ପ୍ରକାଶେ
ଏ ବିଶ୍ୱ ସର୍ଜନା ହୋଇ ଯହିଁରେ
ନିଜେ ସ୍ୱୟଂ ଯେ ବିଶ୍ୱରୂପ ଧରେ
କାର୍ଯ୍ୟ କାରଣୁ ଯେ ପର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୯ ।

ଦୃଶ୍ୟାଦୃଶ୍ୟ ସଂସାର ମାୟା ବଳେ
ଆତ୍ମାରୁ କଳ୍ପଇ ଯିଏ ନିଶ୍ଚଳେ
ତିରୋହିତ କରେ ପ୍ରକାଶ କରି
ମାଙ୍କଡ଼ସା କୀଟ କରେ ଯେପରି
ସାକ୍ଷୀ ସିଏ ସଂସାରର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୦।
କାଳ ରୂପେ ସକଳ ଜୀବ ଧରି
ଅନ୍ତକ ରୂପେଣ ଯିଏ ସଂହରି
ସକଳ ହେତୁ କରଇ ଯେ ଅନ୍ତ
ତମ ନିବିଡ଼ ଘୋର ଯେହ୍ନୁ ପନ୍ତ
ମନ କର୍ମରୁ ଯେ ଦୂର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୧।
ଯାହାର ମହିଁମାକୁ ମୁନି ଜନେ
ସକଳ ଶାସ୍ତ୍ର ତୁଲେ ଅନୁମାନେ
ସର୍ବେ ବିମୁକ୍ତ ଯେତେ ସାଧୁଜନ
ତପ ସାଧନ୍ତି ଯାଇ ଘୋର ବନ
ଆତ୍ମଭୂତ ଯେ ଭୂତର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୨।
ଯାହାର ଜନ୍ମ କର୍ମ କିଛି ନାହିଁ
ଅପର ଗୁଣ ଦୋଷ ଅବା କାହିଁ
ତଥାପି ସିଏ ଲୋକ ରକ୍ଷା ଅର୍ଥେ
ଆପେ ସମ୍ଭବ ହୁଅଇ ଜଗତେ
ପାଳକାନ୍ତକ ସୃଷ୍ଟିର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୩।
ଅରୂପ ରୂପ ଯେ ପୁଣି ଅଦ୍ଭୁତ
ଆତ୍ମା ପ୍ରଦୀପର ସେ ସାକ୍ଷୀ ମତ
ମନ ଓ ବଚନର ଅଗୋଚର
ପରମ ଆତ୍ମାଙ୍କର ସୁଖ ଘର
ଖେଳ ଘର ଯା ସଂସାର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୪।

ସୂକ୍ଷ୍ମ ଓ ନିର୍ମଳ ରୂପ ଯାହାର
ପଣ୍ଡିତ ଜନମାନଙ୍କ ଗୋଚର
ଯାହାକୁ ସତ୍ତ୍ୱ ଗୁଣେ ହୁଏ ପାଇ
ପାଏ ନିଷ୍କାମ ଚିତ୍ତେ ଯେ ବା ଧାୟୀ
ଦର୍ଶନେ ନିର୍ବାଣ ଯା'ର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୫ ।

ତୁମେ ଭୋ ନାଥ ଶାନ୍ତ ଘୋର ରୂପୀ
ମୂଢ଼ ଧର୍ମାନୁସାରେ ବିଶ୍ୱବ୍ୟପୀ
ଯିଏ ହିଁ ନିର୍ବିଶେଷ ସାମ୍ୟ ରୂପ
ସାରା ସଂସାର ଜ୍ଞାନ ଘନ ରୂପ
ତୁମେ ସଂସାରର ସାର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୬ ।

ତୁମେ ଏ ଜଗତର ଆଦିମୂଳ
ମୂଳ ପ୍ରକୃତି ପୁଣି ସୂକ୍ଷ୍ମ ସ୍ଥୁଳ
ସର୍ବ ଇନ୍ଦ୍ରିୟ ଗଣଙ୍କର ଦ୍ରଷ୍ଟା
ସର୍ବ ବିଷୟଙ୍କର ଆଦି ସ୍ରଷ୍ଟା
ରକ୍ଷକ ତୁମେ ଭକ୍ତର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୭ ।

ଅଖିଳ କାରଣର ତୁ ସ୍ୱରୂପୀ
ଅଦ୍ଭୁତ ରୂପେ ତୁମେ ବିଶ୍ୱବ୍ୟାପୀ
ସ୍ୱୟଂ ପ୍ରକାଶ ପ୍ରଭୁ ଗୁଣ ପାଶେ
ବନ୍ଧନ ନୋହୁ ତୁହି ଯେ ବିଶେଷେ
ତୁମେ କରୁଣା ସାଗର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୮ ।

ଅଶେଷ ଜନ୍ତୁଙ୍କର ହୃଦଗତେ
ତୋର ପ୍ରକାଶ ପ୍ରଭୁ ଆତ୍ମାମତେ
ସକଳ ଦେଖୁଛୁ ଭୋ ନାଥ ତୁହି
ତୁମର ଅନୁଭବ କେ ଜାଣଇ
ମଙ୍ଗଳ ସ୍ୱରୂପ ତୋର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୧୯ ।

ତୁମେ ହେ ନାଥ କରୁଣା ସ୍ୱରୂପୀ
ତୃଣ କାଷ୍ଠରେ ରହିଅଛ ବ୍ୟାପୀ
ଯିଏ ମୁକ୍ତ ସଙ୍ଗ ଏହି ଜଗତେ
ସିଏ ତୁମ୍ଭଙ୍କୁ ଭଜେ ଅବିରତେ
ପ୍ରାଣୀ ଶୁଭ ସୁଖ ଘର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୨୦।
ଅକ୍ଷୟ କ୍ଷୟ ନାହିଁ କିଛି ତୋର
ତୁ ପ୍ରଭୁ ବ୍ରହ୍ମ ପରମ ଈଶ୍ୱର
ତୁମେ ଅବ୍ୟକ୍ତ ଆଧାତ୍ମ ସ୍ୱରୂପୀ
ପରମ ଯୋଗ ବଳେ ଅଛ ବ୍ୟାପୀ
ସୂକ୍ଷ୍ମ ସୂକ୍ଷ୍ମ ରୂପ ତୋର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୨୧।
ଯିଏ ନୁହଁନ୍ତି ଦେବାସୁର ମର୍ତ୍ତ୍ୟ
ନୁହେଁ ସ୍ତିରୀ ନୁହେଁ ପୁରୁଷ ଗାତ୍ର
ଜନ୍ତୁ ଶରୀର ଅବା ପଶୁ ଆଦି
ରୂପରେ ଅରୂପରେ ନ ସମ୍ପାଦି
ସତ୍ୟାସତ୍ୟରୁ ବାହାର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୨୨।
ମୁହିଁ ବ୍ୟାଘ୍ରର ଗ୍ରସ୍ତେଗ୍ରସ୍ତ ହୋଇ
ଆତ୍ମା କିମ୍ବା ଶରୀର ନ ଜାଣଇ
ଯେଉଁ ପ୍ରଭୁ ଏ ସଂସାର କାରଣ
ତାହା ପାଦରେ ପଶିଲି ଶରଣ
ରଖ ଶରଣ ମୋହର,
ପୂଜା ଜାଣେ ନାହିଁ, ସ୍ତୁତି ଜାଣେ ନାହିଁ,
ନମସ୍ତେ ପରମେଶ୍ୱର ।୨୩।
ଦେଖି ନକୁଳର ସରଳପଣ
ଆନନ୍ଦିତ ହୋଇଲେ ଭଗବାନ
କହିଲେ ଶିବ ମୁଁ ଜଗତପିତା
ଏହି ସାରା ସଂସାରର ନିୟନ୍ତା
ସତ୍ୟ ଯୁଗରୁ ଏଠାରେ,
ରହିଅଛି ମୁହିଁ, ଲିଙ୍ଗରୂପେ ତହିଁ,
ଡାକେ ଯେ ତାକୁ ଉଦ୍ଧାରେ ।୨୪।

ସୌଭାଗ୍ୟ ବଳ ପ୍ରବଳ ତୋହର
ଅର୍ପିଲୁ ମୋ ଶିରେ ବେଲ ପତର
ଆଜି ରାତି ଅଟଇ ଶିବରାତ୍ରୀ
ତୋ ଉପରେ ମୁହିଁ ପ୍ରସନ୍ନ ଅତି
ଯାଚିକରି ଦେଲେ ବର,
ଏ କଳି ଯୁଗରେ, ଏହି ସଂସାରରେ,
ପ୍ରଥମ ଭକ୍ତ ତୁ ମୋର ।୨୫।
ତୋ ନାମାନୁସାରେ ମୋ ନାମ ହେବ
ନକୁଳେଶ ରୂପେ ବିଶ୍ୱ ଜାଣିବ
ଧନ ସଉଭାଗ୍ୟ ମିଳିବ ତୋତେ
ଗ୍ରହଣ କରିବି ଯା' ଦେବୁ ମୋତେ
ଯିବୁ ଅନ୍ତେ କୈଳାସରେ,
ଜନ୍ମ ମରଣର, ଚକ୍ରରୁ ଉଦ୍ଧାର,
ପାଇବୁ ମୋ ଆଶିଷରେ ।୨୬।
ପ୍ରଭୁ କହି ହୋଇଲେ ଅନ୍ତର୍ଦ୍ଧାନ
ନକୁଳ ଫେରିଣ ନିଜ ସଦନ
ପତ୍ର ପୁଡ଼ିଆରେ ରାନ୍ଧିଲା ଖାଦ୍ୟ
ପ୍ରଭୁଙ୍କୁ ଅର୍ପିଲା କରି ନୈବେଦ୍ୟ
ଖୁସି କରି ଆଶୁତୋଷ,
ମରଣ ଅନ୍ତରେ, କଇଳାସ ପୁରେ,
ପାଇଲା ଅନନ୍ତ ବାସ ।୨୭।
ସେ ଲଙ୍ଗଳା କନ୍ଧେ ପୂଜନ୍ତି ଲିଙ୍ଗ
ନାଶ କରିଥିଲେ ଯିଏ ଅନଙ୍ଗ
ପୂଜା ବିଧି କିଛି ଜାଣନ୍ତି ନାହିଁ
ସରଳ ନିଷ୍ପାପ ମନକୁ ବହି
ପ୍ରଭୁ ସନ୍ତୋଷ ତହିଁରେ,
ପ୍ରକୃତି କୋଳରେ, ତାଙ୍କ ପ୍ରସାଦରେ,
ଦିନ ବିତାନ୍ତି ସଂସାରେ ।୨୮।



# ଅଷ୍ଟମ ପ୍ରକାଶ

(କପିଳା ଗାଈ ଚରିତ ଓ ପ୍ରଭୁଙ୍କ ଲଡୁବାବା ନାମ ଗ୍ରହଣ ବର୍ଣ୍ଣନ)

କାଳ ସ୍ରୋତରେ କନ୍ଧେ କେଣେ ଗଲେ
ପ୍ରଭୁ ଗୁପ୍ତରେ ଜଙ୍ଗଲେ ରହିଲେ
କୁସୁମୀ ନଦୀର ଦକ୍ଷିଣ ତୀରେ
ଭଣ୍ଡାର ପାହାଡ଼ ପାଦ ଦେଶରେ
ରହିଛି ଗୋଟିଏ ଗାଆଁ,
ସବୁ ପାଟକର, ଜନେ ଭରପୁର,
ହରିହରପୁର ନାଆଁ ।୧ ।
ଗ୍ରାମର ପଶ୍ଚିମେ ଦଧିବାମନ
ରକ୍ଷା କରନ୍ତି ନୃସିଂହ ସମାନ
ଦୁଇ ମୁଣ୍ଡେ ଗ୍ରାମଦେବତୀ ଦୁଇ
ଭଣ୍ଡାର ଦେଇ ମା' ବ୍ରାହ୍ମଣୀ ଦେଇ
ଗାଆଁ ମଧ୍ୟେ ମା' ମଙ୍ଗଳା,
ଗ୍ରାମକୁ ଜଗିଣ, ଛନ୍ତି ମାତା ଗଣ,
ସବୁ ତାହାଙ୍କର ଲୀଳା ।୨ ।
ଗ୍ରାମର ଦକ୍ଷିଣେ ଶସ୍ୟ କେଦାର
ସେ ଦିଗେ ରହିଛି ଦୁଇଟି ସର
ବିସ୍ତୀର୍ଣ୍ଣ ନାଳ ରହିଛି ତା ପାଖେ
ତୋଟାମାଳ ଶୋହେ ବିଭିନ୍ନ ବୃକ୍ଷେ
ସଂପନ୍ନ ତା' ଅଧିବାସୀ,
ଧନ୍ୟ ଧାନ୍ୟେ ପୂର୍ଣ୍ଣ, ସମସ୍ତ ସଦନ,
ବିଭୁ ପାଦରେ ବିଶ୍ୱାସୀ ।୩ ।
ଲଡୁ ବେହେରା ନାମ ଗଉଡ଼ର
କାଳୀ ଗାଈଟିଏ ଥିଲା ତାହାର
କପିଳା ନାମକ ପବିତ୍ର ଗାଈ
ଗୋଠରୁ ଯାଏ ଅନ୍ତର୍ଦ୍ଧାନ ହୋଇ
ଦୁହିଁଲେ ନଦିଏ କ୍ଷୀର,
କୁଆଡେ ଯାଉଛି, କଅଣ କରୁଛି,
ରଖେ ତାପରେ ନଜର ।୪ ।

ଥରେ ବଢ଼ି ଆସିଥାଏ ନଦୀରେ
ବଢ଼ି କାଳେ ନ ଡରି ନିର୍ଭୟରେ
ନଦୀକୁ ପହଁରି କେଣେ ସେ ଗଲା
ପଛେ ପଛେ ଲଡୁ ତାକୁ ଖୋଜିଲା
ଘଞ୍ଚ ଜଙ୍ଗଲ ଭିତରେ,
ଯାହା ସେ ଦେଖିଲା, ଆଚମ୍ବିତ ହେଲା,
କ୍ରୋଧରେ ଗଉଡ଼ ଥରେ ।୫ ।

ଦେଖେ ଘଞ୍ଚ ଗିଲ ନଟି ଭିତରେ
ସ୍ଥାନଟି ପୂରିଛି ବିଲ୍ୱ ବୃକ୍ଷରେ
ସ୍ଥିର ଭାବେ ଠିଆ ହୋଇଛି ଗାଈ
ପହ୍ନାରୁ କ୍ଷୀର ତା ସ୍ୱୟଂ ଝରଇ
ଲିଙ୍ଗାକୃତି ଶିଳା ପରେ,
କେନ୍ଦୁକ ଠେଙ୍ଗାରେ, ନିର୍ଘାତ ପାହାରେ,
ଦେଲା ଗଉଡ କ୍ରୋଧରେ ।୬ ।

ଡର ଡରେ ଗାଈ ଗଲା ପଳାଇ
ମାଡ଼ ଡରେ ଅସତରକ ହୋଇ
ଖୋଜ ପଡିଗଲା ଶିଳା ଉପରେ
ଲିଙ୍ଗରୁ ରକ୍ତ ଧାର ଧାର ଝରେ
ଗଉଡ ଦେଖି ରକତ,
ଘଟଣା ଏପରି, ଘଟିଲା କିପରି,
ଭାବଇ ଅସମ୍ଭାବିତ ।୭ ।

ସ୍ତମ୍ଭିଭୁତ ହୋଇ ରହିଲା କ୍ଷଣେ
ଦଉଡ଼ିଲା ଗ୍ରାମେ ବିସ୍ମୟ ମନେ
ଗ୍ରାମ ମୁଖିଆକୁ କହିଲା ଯାଇ
ସାଆନ୍ତେ ହୃଦୟ ମୋର ଥରଇ
ଶିଳାରୁ କେହ୍ନେ ରୁଧିର,
ପ୍ରତ୍ୟକ୍ଷେ ଝରିବ, ଏତ ଅସମ୍ଭବ,
ଦେଖି ଆସିଲି ବନର ।୮ ।

ଗ୍ରାମ ମୁଖିଆ ସମସ୍ତଙ୍କୁ ନେଇ
ଗଉଡ଼କୁ ଧରି ଦେଖିଲେ ଯାଇ
କହୁଥିଲା ଯାହା ସିଏ ତ ସତ
କଥାଟା ସତରେ ପୂର୍ବୁ ଅଶ୍ରୁତ
ଲିଙ୍ଗ ପରେ ଗାଈ ଖୋଜ,
ପଥରୁ ରୁଧିର, ବହେ ଝରଝର,
ବିଶ୍ୱାସେ ନୁହେଁ ସହଜ ।୯ ।

ଗାଆଁରେ ଘଟଣା ହେଲା ପ୍ରଘଟ
ଲିଙ୍ଗ ରୂପେ ମହାଦେବ ପ୍ରକଟ
ଗଉଡ଼କୁ ଧନ୍ୟ ଧନ୍ୟ କହିଲେ
ନଡ଼ିଆ କଦଳୀ ନେଇ ପୂଜିଲେ
କଥା ଗଲା ରାଜା କାନେ,
ପାତ୍ର ମିତ୍ର ଧରି, ପ୍ରଭୁଙ୍କୁ ସୁମରି,
ପହଞ୍ଚିଲେ ଆସି ବନେ ।୧୦।

ସମସ୍ତ ଘଟଣା କଲେ ତଦନ୍ତ
ପରଖିଲେ ତାହାର ଆଦି ଅନ୍ତ
ଉପଲବ୍ଧି କଲେ ଏ ସ୍ୱୟଂ ଶିବ
ଜ୍ୟୋତି ର୍ଲିଙ୍ଗ ରୂପରେ ମହାଦେବ
ସୌଭାଗ୍ୟ ଏହା ତାଙ୍କର,
ତାଙ୍କରି ରାଜ୍ୟରେ, ଭଣ୍ଡାର ପାଦରେ,
ଦର୍ଶନ ଦେଲେ ଈଶ୍ୱର ।୧୧।

ନଡ଼ିଆ କଦଳୀ ଆମ୍ବାଦି ଫଳ
ଆଣିଲେ ଲୋକ ପଠାଇ ସକଳ
ଭାଙ୍ଗ, କ୍ଷୀର, ବିଲ୍ୱପତ୍ର, ଚନ୍ଦନ
ଦୁର୍ଦ୍ଦୁରା, ଗୟସେ କଲେ ମଣ୍ଡନ
ଅପରାଜିତା, ମନ୍ଦାର,
ଦେଇ ଗଙ୍ଗା ନୀର, ପୂଜିଲେ ଶଙ୍କର,
ଗାଇ ସ୍ତୋତ୍ର ପଞ୍ଚାକ୍ଷର ।୧୨।

## ରାଜାଙ୍କ ଶିବ ସ୍ତୋତ୍ର

ଭୁଜଙ୍ଗକୁ ହାର କରି ଗଳାରେ
ତିନି ନେତ୍ର ଶୋହେ ଯା'ର ମୁଖରେ
ଶରୀରରେ ଭସ୍ମ ଯା' ବିଲେପିତ
ଦିଗକୁ ପିନ୍ଧିଛି ଯେ କରି ବସ୍ତ୍ର
ନ'କାରରୂପ ସେ ହର,
ବିଶୁଦ୍ଧ ସ୍ୱରୂପ, ଅବିନାଶୀ ରୂପ,
ଶିବଙ୍କୁ ମୋ ନମସ୍କାର ।୧୩।

ମନ୍ଦାକିନୀ ଜଳ ସହ ଚନ୍ଦନ
ସଦା ହୁଅଇ ଯାହାର ଅର୍ଚ୍ଚନ
ମନ୍ଦାର ଗୟସ ଆଦି ପୁଷ୍ପରେ
ଯା' ପୂଜନ କରାଯାଏ ଭକ୍ତିରେ
ମ'କାର ରୂପ ଈଶ୍ୱର,
ନନ୍ଦୀଙ୍କର ସ୍ୱାମୀ, ଶିବଗଣ ସ୍ୱାମୀ,
ଶିବଙ୍କୁ ମୋ ନମସ୍କାର ।୧୪ ।
କଲ୍ୟାଣ ସ୍ୱରୂପୀ ଅଟନ୍ତି ଯିଏ
ଗୌରୀ ମୁଖେ ପ୍ରସନ୍ନତା ଯେ ଦିଏ
ଦକ୍ଷ ରାଜାର ଯଜ୍ଞ ନାଶକାରୀ
ଧ୍ୱଜାରେ ବୃଷଭ ଚିହ୍ନ ଯାହାରି
ନୀଳକଣ୍ଠ ସେ ଶି'କାର,
ବିଶୁଦ୍ଧ ସ୍ୱରୂପ, ଅବିନାଶୀ ରୂପ,
ଶିବଙ୍କୁ ମୋ ନମସ୍କାର ।୧୫ ।
ବଶିଷ୍ଠ, ଅଗସ୍ତ୍ୟ, ଗୌତମ ଆଦି
ଯା'ରେ ପୂଜନ୍ତି ଦେବତା ଇନ୍ଦ୍ରାଦି
ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି ଯା'ର ନୟନ
ଅଚିନ୍ତ୍ୟ ଅଭେଦ୍ୟ ଯା'ର ଚିନ୍ତନ
ବ'କାର ସ୍ୱରୂପ ହର,
ବିଶୁଦ୍ଧ ସ୍ୱରୂପ, ଅବିନାଶୀ ରୂପ,
ଶିବଙ୍କୁ ମୋ ନମସ୍କାର ।୧୬ ।
ଯକ୍ଷର ସ୍ୱରୂପ ଧାରଣକାରୀ
ଜଟା ଶିରରେ ଶୋଭଇ ଯାହାରି
ପିନାକ ହସ୍ତ ସେହି ସନାତନ
ଅସମ୍ଭବ ଯା' ସ୍ୱରୂପ ଭେଦନ
ୟ'କାର ସେ ଦିଗମ୍ବର,
ବିଶୁଦ୍ଧ ସ୍ୱରୂପ, ଅବିନାଶୀ ରୂପ,
ଶିବଙ୍କୁ ମୋ ନମସ୍କାର ।୧୭ ।
ପ୍ରଭୁଙ୍କର ପୂଜା ଅର୍ଚ୍ଚନା ପାଇଁ
ବିଭିନ୍ନ ସେବକ ଖଞ୍ଜିଲେ ନେଇ
ସମସ୍ତଙ୍କ ପାଇଁ ଜମି ଖଞ୍ଜିଲେ
ଛାୟା ମଣ୍ଡପଟେ ସ୍ଥାପନ କଲେ
ଖଞ୍ଜିଲେ ଯାତରା ପର୍ବ,
ପ୍ରଥମ ସେବକ, ହୋଇ ନିରୀକ୍ଷକ,
ରାଜନ ଦେଖନ୍ତି ସର୍ବ ।୧୮ ।

ଗଉଡ଼ ମୂର୍ଖାମୀରୁ ମହେଶ୍ୱର
କଷ୍ଟ ପାଇଲେ ସେ ଏତେ ମାତ୍ରାର
ଆଦେଶିଲେ ଦୁଇ କ୍ରୋଶର ମଧେ
ଗଉଡ଼ ନ ରହିବେ ବୋଲି କ୍ରୋଧେ
ଆଜି ଯାଏଁ ଏ କ୍ଷେତ୍ରରେ,
ଗଉଡ଼ ଜାତିର, ନିବାସ କାହାର,
ନାହିଁ ଆଠ ପାଟଣାରେ ।୧୯।

ପ୍ରଭୁଙ୍କ ମନ୍ଦିର ଅଛି ଯେ ସ୍ଥାନ
ଥିଲା ରଣପୁର ରାଜ୍ୟ ଅଧିନ
ନରେନ୍ଦ୍ର ତାଙ୍କ ଉପାଧି ଅଟଇ
ନରେନ୍ଦ୍ରପୁର ଗ୍ରାମ ସେ ବସାଇ
ଗଢ଼ିଲେ ରେଖ ମନ୍ଦିର,
ମୁଖଶାଳା ସହ, ଘଣ୍ଟ ବଜାଗୃହ,
ଗଢ଼ିଲେ କରି ସୁନ୍ଦର ।୨୦।

ନୟାଗଡ଼ ରାଜା କରିଲେ ଯୁଦ୍ଧ
ରଣପୁର ନହେଲା ସମାସ୍କନ୍ଧ
ରଣପୁର ରାଜା ଯୁଦ୍ଧରେ ହାରି
ଗଲା କାକଳମା ହୋଇଣ ପାରି
ଦଳବେହେରା ବଳରେ,
ନୟାଗଡ଼ ରାଜା, ସଇନରେ ସଜା,
ଜିତିଲେ ସେହି ଯୁଦ୍ଧରେ ।୨୧।

ପ୍ରଭୁଙ୍କ ପରିଚାଳନା ଦାୟିତ୍ୱ
ହୋଇଲା ନୟାଗଡ଼ ରାଜା ସତ୍ତ୍ୱ
ଗଢ଼ିଲେ ନାଟମଣ୍ଡପ ମହନ
ପାର୍ବତୀ ମନ୍ଦିର କଲେ ନିର୍ମାଣ
ଜଗନ୍ନାଥଙ୍କ ମନ୍ଦିର,
କରିଣ ନିର୍ମାଣ, ଯାତ୍ରାଦି ଭିଆଣ,
କରିଲେ ସେ ରାଜବର ।୨୨।



# ନବମ ପ୍ରକାଶ

(ପ୍ରଭୁ ଲଡୁବାବାଙ୍କ କ୍ରମ ପରିପ୍ରକାଶର ପୌରାଣିକ ଓ
ଐତିହାସିକ ଆଲୋଚନା)

ଲଡୁବାବାଙ୍କ ପୁଣ୍ୟ ଇତିହାସ
ଶୁଣ କରୁଅଛି ଏବେ ପ୍ରକାଶ
ତ୍ରେତୟା ଯୁଗରେଏହି ଠାବରେ
ବିଶ୍ୱାମିତ୍ର ଋଷି ମଠ ପଦାରେ
ନିର୍ମାଣ କରି ଆଶ୍ରମ,
ପୂଜୁଥିଲେ ଶିବ, ପାର୍ବତୀଙ୍କ ଧବ,
ଜପୁ ଥିଲେ ପ୍ରଭୁ ନାମ ।୧ ।
ଦ୍ୱାପର ଯୁଗରେ ସେ ବାଣାସୁର
ରହିଣ ଅସୁରଦ୍ୱିପ ଉପର
ପ୍ରଭୁଙ୍କ ଚରଣେ ମନ ଲଗାଇ
ଆନନ୍ଦେ ତାହାର ଦିନ ବଞ୍ଚଇ
ଅନିରୁଦ୍ଧ ଓ ଉଷାର,
ହେଲା ବାହାଘର, ଅପମାନେ ତାର,
ଗଲା ସିଏ ବାଣପୁର ।୨ ।
ଲଙ୍ଗୁଳି କନ୍ଦେ ପୂଜନ୍ତି ଗୁପ୍ତରେ
ପୁଡ଼ା ଭୋଗ ଦେଇ ଶାଳ ପତ୍ରରେ
ସରଳ ନିଷ୍ପାପ ମନ ତାଙ୍କର
ପୂଜାରେ ସନ୍ତୁଷ୍ଟ ମହା ଈଶ୍ୱର
ନିଜସ୍ୱ ପୂଜା ପଦ୍ଧତି,
ଶାସ୍ତ୍ର ପୁରାଣର, ନାହିଁ ଦରକାର,
ହୃଦୟ ନିର୍ମଳ ଅତି ।୩ ।
କାହିଁ କେତେ କାଳ ବହିଣ ଗଲା
ହରିହରପୁରେ ଲଡୁଆ ଥିଲା
କପିଳା ନାମରେ ତା କାଳି ଗାଈ
ପ୍ରଭୁ ମହିମା ବିକାଶେ ତା' ପାଇଁ
ରଣପୁର ରଜା ଜାଣି,
ମଣ୍ଡପ ଗଢ଼ିଲା, ସେବା ଖଞ୍ଜା କଲା,
ସେବାସୀ ଲୋକଙ୍କୁ ଆଣି ।୪ ।

ଶରଣକୁଳେ ଥିଲା ତାର ଗଡ଼
ନୟାଗଡ଼ ରଜା ମାରିଲେ ମାଡ଼
ଗଲା ସେ କାକଲମା ପାର ହୋଇ
ନୟାଗଡ଼ ରଜା ଏବେ ବୁଝଇ
ସେବା ପୂଜା ମନ୍ଦିରର,
ନୟାଗଡ଼ ଇଷ୍ଟ, କଷ୍ଟିଙ୍କର କଷ୍ଟ,
ହରନ୍ତି ସେ ହରିହର ।୫ ।
ରାଜା ବଳଭଦ୍ର ସିଂହଙ୍କ ଶିଶ
ରଘୁନାଥଙ୍କ ଅମିତ ସାହସ
ପ୍ରଦର୍ଶନ କରି ସଇନ ବଳ
ଛଡ଼ାଇ ଆଣିଲେ ଶରଣକୁଳ
ଲଡୁବାବାଙ୍କ ମନ୍ଦିର,
ଅଧିନେ ତାଙ୍କର, ପୂଜନ୍ତି ସେ ହର,
ଖଟନ୍ତି ତାଙ୍କ ପୟର ।୬ ।
ଆସିଲା ତା ପରେ ଇଂରେଜ କାଳ
ରାଜା ନାବାଳକ ହେବାରୁ କାଳ
ନିଯୁକ୍ତି ପାଇଲା ସତାର ଖାଁଆ
ଲୋକମାନେ ନାଁଆ ଶୁଣି ଛାନିଆ
ସ୍ୱାଧିନ ହେବାରୁ ଦେଶ,
ଉପଜିଲ୍ଲାପାଳ, ବୁଝନ୍ତି ସକଳ,
ମନ୍ଦିର କାର୍ଯ୍ୟ ସର୍ବସ୍ୱ ।୭ ।
ଦେବୋତ୍ତର ବିଭାଗଟିଏ ଅଛି
ରାଜ୍ୟ ସରକାର ତାକୁ ବୁଝୁଛି
ପରୋକ୍ଷରେ ତାର ନିୟମ ଚଳେ
ତତ୍ତ୍ୱାବଧାରକ ମନ୍ଦିର ଚାଳେ
ପୂଜ୍ୟ ମନ୍ଦିର ପରିଚ୍ଛା,
ମନ୍ଦିରର ନୀତି, ଦେଖୁଛନ୍ତି ନିତି,
ସବୁ ପ୍ରଭୁଙ୍କର ଇଚ୍ଛା ।୮ ।



# ଦଶମ ପ୍ରକାଶ

(ପ୍ରଭୁ ଲଡୁବାବାଙ୍କ ମନ୍ଦିର ନିର୍ମାଣ ଶୈଳୀ ସଂପର୍କରେ ଆଲୋଚନା)

ଶୁଣ ହେ ସମସ୍ତ ଜ୍ଞାନୀ ପ୍ରବର
ନିର୍ମାଣ ଶୈଳୀ ଏହି ମନ୍ଦିରର
ଏହା ନିର୍ମିତ ଉତ୍କଳ ଶୈଳୀରେ
ରେଖ ଶୈଳୀ ବୋଲି କହନ୍ତି ଯାରେ
ପ୍ରଭୁ ଯେଣୁ ପଞ୍ଚାନନ,
ପାଞ୍ଚଟି ଅଂଶରେ, ବିଭିନ୍ନ ସ୍ତରରେ,
ନିର୍ମିତ ପ୍ରଭୁ ସଦନ ।୧ ।
ମୁଖଶାଳା ସହ ମୁଖ୍ୟ ମନ୍ଦିର
ଘଣ୍ଟବଜା ପୁଣି ନାଟମନ୍ଦିର
ପାଞ୍ଚ ହୁଏ ମିଶାଇଲେ ମହନ
ରଣପୁର ନୟାଗଡ଼ ରାଜନ
ଗଢ଼ିଛନ୍ତି ପ୍ରଭୁ ପାଇଁ,
ବଉଳମାଳାରେ, ଟାଣ ପଥରରେ,
ଆକର୍ଷଣୀୟ ଦିଶଇ ।୨ ।
ଉତ୍କଳ ଶୈଳୀର ଯେତେ ମନ୍ଦିର
ଶ୍ରେଣୀ ବିଭାଗ ତା ତିନି ପ୍ରକାର
ରେଖ ପୀଢ଼ ଏବଂ ଖାକରା ଶୈଳୀ
ଏକକୁ ଏକ ଏ ଅଟନ୍ତି ବଳି
ଲଡୁବାବାଙ୍କ ମନ୍ଦିରେ,
ଏ ତିନୋଟି ଶୈଳି, ତିନୋଟି ପ୍ରଣାଳୀ,
ଲାଗି ଅଛି ପ୍ରୟୋଗରେ ।୩
ରେଖ ଶୈଳୀରେ ମୁଖ୍ୟ ମନ୍ଦିରଟି
ପୀଠ, ଗଣ୍ଡି ଓ ଶିଖର ତିନୋଟି
ତିନି ଭାଗରେ ମନ୍ଦିର ବିଭକ୍ତ
ରେଖା ପ୍ରାୟ ଦିଶେ ସୌମ୍ୟ ଅତ୍ୟନ୍ତ
ଶୀର୍ଷରେ କଳସ ଅଛି,
ମନୁଷ୍ୟ ଶରୀର, ଗଠନ ଏହାର,
ଭାରି ବଢ଼ିଆ ଦିଶୁଛି ।୪ ।

କଳସ ଉପରେ ତ୍ରିଶୂଳ ଥାଇ
ତ୍ରିଶୂଳ ନାଶିବ ଦୃଢ଼େ କହଇ
ଆଦି ଦୈବିକ ଓ ଆଦି ଭୌତିକ
ତାହା ସହିତ ମିଶି ଆଧାତ୍ମିକ
ବୃଷଭ ଧ୍ୱଜ ତାପରେ,
ପତିତେ ଡାକଇ, ହାତକୁ ହଲାଇ,
ନାଶିବି କ୍ଲେଶ କ୍ଷଣରେ ।୫ ।
ଚୂନରେ ମନ୍ଦିର ହୋଇ ଛାଉଣୀ
ସୁନ୍ଦର ଦିଶେ ଯେହ୍ନେ ପାଟରାଣୀ
ଭୂତ ପିଶାଚ ଯୋନି ପ୍ରୀତି ପାଇଁ
ଆଦି ରସ ମୂର୍ତ୍ତି କିଛି ଅଛଇଁ
କାର୍ତ୍ତିକ ଗଙ୍ଗା ଗଣେଶ,
ପାର୍ଶ୍ୱ ଦେବ ରୂପେ, ଅଛନ୍ତି ସ୍ୱରୂପେ,
ଭକ୍ତେ ଦିଅନ୍ତି ଆଶିଷ ।୬ ।
ଜୀବନୀ ଭଗବାନ କୃଷ୍ଣଙ୍କର
ଚାରି ପାର୍ଶ୍ୱେ ଖୋଦିତ ମନ୍ଦିରର
ମୁଖଶାଳାର ଉତ୍ତର ପାର୍ଶ୍ୱରେ
ଯୋଗ ମୁଦ୍ରା ଚିତ୍ର ମନକୁ ହରେ
ରତ୍ନ ଭଣ୍ଡାର ଘରଟି,
ମୁଖଶାଳା ଠାରେ, ରହିଛି ଗୁପ୍ତରେ,
ଖୋଲିନି କେବେ ସେଇଟି ।୭ ।
ପାଟ ବୃଷଭ ମୁଖଶାଳା ଠାରେ
ବଡ଼ ବୃଷଭ ଛନ୍ତି ମହନରେ
ସିଂହ ଦ୍ୱାର ସାମନାରେ ବୃଷଭ
ଆକାର ତାଙ୍କ କରେ ହତଭମ୍ବ
ପ୍ରଭୁଙ୍କ ସେବାରେ ଥାଇ,
ଭକତ କଥାକୁ, କହେ ଈଶ୍ୱରଙ୍କୁ,
କାମନା ଦିଏ ପୁରାଇ ।୮ ।
ମୁଖଶାଳା ଆଉ ନାଟ ମନ୍ଦିର
ଘଣ୍ଟ ବଜାଗୃହ ସାଥିରେ ତାର
ଏ ତିନି ପୀଢ଼ ଶୈଳୀରେ ନିର୍ମିତ
ବର୍ଗ ତାଭୂମି, ପିରାମିଡ଼ ଛାତ
ଖାକରା ଯେ ମହନଟି,
ଆୟତାକାରରେ, ଭୂମି ଅଟେ ତାର,
ପିରାମିଡ଼ ତା ଛାତଟି ।୯ ।

ଗୟଳସିଂହ ପର୍ବତ ଶୃଳିଆ
କୋମଣ୍ଡ ଆଦି ସ୍ଥାନର ମୁଣ୍ଡିଆ
ମିଳଇ ବଉଳମାଳା ପଥର
ମାଙ୍କଡ଼ାରେ ମୂଳଦୁଆ ଏହାର
ଶିଳ୍ପୀକୁଳ ଯତନରେ,
ରାଜା ଆଦେଶରେ, ଭକ୍ତି ଭାବନାରେ,
ଗଢ଼ିଛନ୍ତି ମନ୍ଦିରରେ ।୧୦।

ପଥର ପୃଷ୍ଠକୁ ଯତ୍ନେ ଘଷିଣ
କରାଯାଇଅଛି ଅତି ଚିକ୍କଣ
ସ୍ୱତନ୍ତ୍ର ରସକୁ ଦେଇ ସେଥିରେ
ଯୋଡ଼ା ହୋଇଛି ପଥର ପଥରେ
ଧାତୁର ପ୍ରୟୋଗ ନାହିଁ,
ପରବର୍ତ୍ତୀ କାଳେ, ମନ୍ଦିରର ମୂଳେ,
ହୋଇଅଛି ବ୍ୟବହାର ।୧୧।

ପଦ୍ମ ପୃଷ୍ଟଟିର ସ୍ଥାୟିତ୍ୱ ପାଇଁ
ଲୌହର ଯୋଳିଆ ଲାଗି ଅଛଇ
ଦୁଆର ବନ୍ଧ ମାନଙ୍କ ଉପରେ
ଲୁହାର କଡ଼ି ସୁନ୍ଦର ଭାବରେ
ଲାଗିଛି ଦୃଢ଼ତା ପାଇଁ,
ନିର୍ମାଣ କୌଶଳ, ଅଟଇ ବିମଳ,
ଦେଖିଲେ ମନ ତୋଷଇ ।୧୨।

ଗଜାନନ କାର୍ତ୍ତିକ ଗଙ୍ଗାଦେବୀ
ମନକୁ ଆକର୍ଷେ ତାଙ୍କର ଛବି
ପାର୍ଶ୍ୱ ଦେବତା ରୂପରେ ଅଛନ୍ତି
ଭକତ କାମନା ପୂରାଉଛନ୍ତି
ପଦ୍ମ ପୃଷ୍ଟଟି ପ୍ରଶସ୍ତ,
ଲାଗି ମନ୍ଦିରକୁ, ଦେଖିଲେ ବେଢ଼ାକୁ,
ଆନନ୍ଦ ମିଳେ ଅତ୍ୟନ୍ତ ।୧୩।

ବିଂଶ ଡ଼ିଗ୍ରୀ ଅକ୍ଷ ଅଂଶ ସ୍ଥାନରେ
ମନ୍ଦିର ରହିଛି ଯେଣୁ ପୃଥ୍ୱୀରେ
ପଦ୍ମ ପୃଷ୍ଠ ଉପରରୁ ମନ୍ଦିର
ଉତ୍ତର ଦିଗକୁ ହୋଇଛି ବକ୍ର
ତେଣୁ ସମ ଦିବସରେ,
ସିଧା ସୂର୍ଯ୍ୟଙ୍କର, କିରଣର ଧାର,
ପଡ଼ଇ ଲିଙ୍ଗ ଉପରେ ।୧୪।

ମନ୍ଦିରର ଚାରି ପାଖରେ ବେଢ଼ା
ତିନି ପାର୍ଶ୍ୱେ ପାର୍ଶ୍ୱ ଦେବତା ଛିଡ଼ା
ଉତ୍ତରକୁ ଅଛି ପାଦୁକ କୁଣ୍ଡ
ପାଦୁକ ନାଶଇ ଯମର ଦଣ୍ଡ
ଅଛି ଦକ୍ଷିଣରେ ସର,
ବାୟବ କୋଣରେ, ବାର୍ଣ୍ଣି ଶୋଭାପାଏ,
ପଶ୍ଚିମରେ ସର ଘର ।୧୫।
ସିଂହ ଦ୍ୱାରକୁ ଲାଗିଛି ଅଫିସ୍
ଗୋଦାମ ଘର ରହିଛି ତା ପାଶ
ଅଗ୍ନି କୋଣେ ଖଜା ଘରଟି ଅଛି
ପ୍ରଭୁଙ୍କର ସବୁ ଭୋଗ ମିଳୁଛି
ସିଂହ ଦ୍ୱାର ସମ୍ମୁଖରେ,
ଦୋଳବେଦୀ ଅଛି, ଯଜ୍ଞଶାଳା ଅଛି,
ଭରପୁର ଦୋକାନରେ ।୧୬।





# ଏକାଦଶ ପ୍ରକାଶ

(ପ୍ରଭୁ ଲଡୁବାବାଙ୍କ ମନ୍ଦିର ନିର୍ମାଣ ସମୟ ନିର୍ଣ୍ଣୟ ନିମନ୍ତେ ବିଭିନ୍ନ ମତ ସମ୍ପର୍କରେ ବର୍ଣ୍ଣନ)

ଶୁଣ ହେ ସୁଜନ ଜ୍ଞାନୀ ଭକତ
କହୁଛି ମନ୍ଦିର କାଳ ଚରିତ
କେବେ କିଏ କରିଲା ଏ ମନ୍ଦିର
ମତ ଅଭିମତ ଯେତେ ତାହାର
ପ୍ରତ୍ୟକ୍ଷରେ ଲେଖା ନାହିଁ,
ପରୋକ୍ଷ ଭାବରେ, କାଳ ସମ୍ବନ୍ଧରେ,
ବର୍ଣ୍ଣିବା ଯାହା ମିଳଇ ।୧ ।
ପ୍ରଥମ ମତଟି ଏବେ କହୁଛି
ଶିଳ୍ପୀଶାସ୍ତ୍ର ଯାହା ମତ ଦେଉଛି
ଶିଳ୍ପୀମାନେ ତାଙ୍କ ଅନୁଭବରୁ
କହନ୍ତି ଦେଖି ମନ୍ଦିର ଗଢ଼ାରୁ
ମନ୍ଦିର ନିର୍ମାଣ କାଳ,
ଲଡ୍ଡୁବାବାଙ୍କର, ରେଖ ମନ୍ଦିରର,
କେବେ ଅଟେ ଜନ୍ମକାଳ ।୨ ।
ଶିଳ୍ପୀ ଶାସ୍ତ୍ର କହେ ଏକହଜାର
ବର୍ଷରୁ ଅଧିକ ହେଲେ ମନ୍ଦିର
ମନ୍ଦିରରୁ ହୁଅଇ ଶିଳା ପାତ
ଏହା ଶିଳ୍ପୀଶାସ୍ତ୍ର ଜ୍ଞାନୀଙ୍କ ମତ
ଏକଶତ ବର୍ଷ ତଳେ,
ଲଡ୍ଡୁବାବାଙ୍କର, ମନ୍ଦିର ପଥର,
ଖସି ପଡ଼ିଥିଲା ତଳେ ।୩ ।
ଏ ତଥ୍ୟ ନେଇ କରିଲେ ବିଚାର
ଏକାଦଶ ଶତ ବୟସ ଯାର
ମସିହା ବିଂଶାଧିକ ବିଂଶ ଶତ
ଚାଲିଛି ଏବେ ଏ ଇଂରାଜୀ ମତ
ଦେଖିଲେ କରି ହିସାବ,
ଶତାବ୍ଦୀ ଦଶର, ଅଟେ ଏ ମନ୍ଦିର,
ଯହିଁ ବିଜେ ମହାଦେବ ।୪ ।

ଶରଣକୁଳେ ଅଛି ଭଞ୍ଜ ସାହି
ଭଞ୍ଜ ରାଜାଙ୍କର କୃତିତ୍ୱ ଏହି
କବିଙ୍କ ସମ୍ରାଟ ଉପେନ୍ଦ୍ର ଭଞ୍ଜ
ବସା କରିଏଥେ ସକାଳ ସଞ୍ଜ
ଲଡୁକେଶ୍ୱର ଦର୍ଶନ,
କରି ଯାଉଥିଲେ, ମନ୍ତ୍ର ଜପୁ ଥିଲେ,
ପ୍ରଭୁଙ୍କର ସନ୍ନିଧାନ ।୫ ।
ଷୋଡ଼ଶ ଶତାବ୍ଦୀ ତାଙ୍କ ସମୟ
ତା ପୂର୍ବ ମନ୍ଦିର ଏ ଅଟେ ଥୟ
ଏମନ୍ତେ ହିସାବ କରି ଦେଖିଲେ
ପଞ୍ଚଦଶ ଶତାବ୍ଦୀ ଆସେ ଭଲେ
ଲଡୁବାବାଙ୍କ ମନ୍ଦିର,
ଏ କଥା ନିଶ୍ଚିତ, ସାହିତ୍ୟିକ ମତ,
ଅଟଇ ବହୁ ପୂର୍ବର ।୬ ।
ପ୍ରତ୍ନତତ୍ତ୍ୱବିତ ଆସି ମନ୍ଦିରେ
ପଦ୍ମପୃଷ୍ଠ ଶିଳା ନେଇ ସାଥିରେ
ଅତି ଆଧୁନିକ ଯନ୍ତ୍ରକୁ ଧରି
ପରୀକ୍ଷାଗାରରେ ପରୀକ୍ଷା କରି
ନିଷ୍କର୍ଷ କଲେ ବାହାର,
ଶତାବ୍ଦୀ ପନ୍ଦର, ସମୟ ପୂର୍ବର,
ଅଟଇଏହି ମନ୍ଦିର ।୭ ।
ରଘୁନାଥ ସିଂହ ନାମେ ରାଜନ
ନବଦୁର୍ଗ ରାଜ୍ୟ କରି ମଣ୍ଡନ
ଷଡ଼ଦଶ ଶତାବ୍ଦୀ ପୂର୍ବ ଭାଗେ
ତଡ଼ି ରଣପୁର ରାଜାଙ୍କୁ ରାଗେ
ମନ୍ଦିର ହାତକୁ ନେଲେ,
ଖଞ୍ଜି ସେବା ବାଡ଼ି, ମହନାଦି ଗଢ଼ି,
ପ୍ରଭୁ ସେବାରେ ଖଟିଲେ ।୮ ।
ନବଦୁର୍ଗ ନାମେ ଏ ଯେଉଁ ଦେଶ
କହୁଛି ସଂକ୍ଷେପେ ତା' ଇତିହାସ
ତ୍ରୟୋଦଶ ଶତାବ୍ଦୀ ସମୟରେ
ବାଘେଲା ବଂଶ ସେ ରେବା ରାଜ୍ୟରେ
ମଧ୍ୟପ୍ର ଦେଶ ଅଞ୍ଚଳେ,
ଶାସନ କରନ୍ତି, ପ୍ରଜାଙ୍କୁ ପାଳନ୍ତି,
ଆନନ୍ଦରେ ବାହୁ ବଳେ ।୯ ।

ଦୁଇ ରାଜ ପୁତ୍ର ସେହି ବଂଶର
ଦେଖିବାକୁ ଜଗନ୍ନାଥ ଠାକୁର
ସୂର୍ଯ୍ୟମଣି ଚନ୍ଦ୍ରମଣି ନାମକ
ସଂସାରେ ଥିଲା ତାଙ୍କ ନାମ ଡାକ
ନୀଳାଚଳ ଯାଉଥିଲେ,
ହେବାରୁ ଅନ୍ଧାର, ଗୁନାମାଟିଠାର,
ରାତ୍ରୀ ଯାପନ କରିଲେ ।୧୦।
ମନ୍ଦିର ପିଣ୍ଡାରେ କଲେ ଶୟନ
ରାତ୍ରିରେ ଶୁଣିଲେ ବ୍ୟାଘ୍ର ଗର୍ଜନ
ଭ୍ରାତା ଦ୍ୱୟ ଏକ ସାଥେ ଲଢ଼ିଲେ
ସମରେଶାର୍ଦ୍ଦୁଳ ହତ କରିଲେ
ଜନେ ଦେଖି ଆନନ୍ଦିତ,
ମହା ଉତ୍ସାହରେ, ସେହି ଅଞ୍ଚଳରେ,
ପ୍ରଦାନ କଲେ ନେତୃତ୍ୱ ।୧୧।
ସୂର୍ଯ୍ୟମଣି ତହିଁ ଦୁର୍ଗ ଗଢ଼ାଇ,
ପାଳିଲେ ପ୍ରଜାଙ୍କୁ ସେନେହ ଦେଇ
ହରିପୁର ଓ ରଳବ ଉପରେ
ଆକ୍ରମଣ କରି ବାହୁ ବଳରେ
ନିଜ ଅଧିନକୁ ନେଲେ,
ଭୂଖଣ୍ଡ ବଢ଼ାଇ, ଶକ୍ତିବାନ ହୋଇ,
ଆନନ୍ଦେ ଦିନ ବଞ୍ଚିଲେ ।୧୨।
ଏକଦା ରାଜା ରଳବ ଗ୍ରାମରେ
ରାତ୍ରେ ଶୋଇଥିଲେ ଗାଢ଼ ନିଦ୍ରାରେ
ହଠାତ୍ ବ୍ୟାଘ୍ରେକ ଛାଡ଼ି ଗର୍ଜନ
ଅତର୍କିତେ କରିଲା ଆକ୍ରମଣ
ସୂର୍ଯ୍ୟମଣି ବିକ୍ରମରେ,
ଲଢ଼ି ତା' ସାଥିରେ, ମାରିଲେ ଖଡ୍ଗରେ,
ଅତିଶୟ ସାହସରେ ।୧୩।
ଉକ୍ତ ସମୟରେ ଏକ ରମଣୀ
ଗଲା କୁମ୍ଭ ନେଇ ସଲିଳ ଆଣି
ଫେରିଲା ବେଳେ ଦେଖିଲେ ରାଜନ
ବାଳକ ଏକ ଅଛି ତା' ସଙ୍ଗେଣ
ସଂଶୟାସକ୍ତ ମନରେ,
ରମଣୀକୁ ଯାଇ, ରାଜା ପଚାରଇ,
ବିଜେ ହୋଇ ସମ୍ମୁଖରେ ।୧୪।

ସତ କୁହ କିଏ ତୁମ୍ଭେ ଗୋ ମାତ
ଦେଖିଲି ଯାହା ଏ ତ ବିପରୀତ
ସାଧାରଣ ରମଣୀ ତୁ ନୁହଁଇ
ଫେଡ଼ ମୋ ସନ୍ଦେହ ଏ କ୍ଷଣି ତୁହି
ରାଜାର ବଚନ ଶୁଣି,
କହିଲେ ରମଣୀ, ମୁହିଁ ବାଉରାଣୀ,
ଏ ଗ୍ରାମର ଠାକୁରାଣୀ ।୧୫ ।
ପରଖିବାକୁ ତୋର କେତେ ବଳ
ପଠାଇ ଥିଲି ମୁଁ ସେହି ଶାର୍ଦ୍ଦୁଳ
ଏହି ଯେ ବାଳକ ସେହି ଅଟଇ
ମାୟାରେ ତାକୁ ମୁଁ ଥିଲି ପଠାଇ
ମୋତେ ତୁହି ହତ କର,
ସମ୍ମାନ ବଢ଼ିବ, ରାଜ୍ୟ ତୋ ବଢ଼ିବ,
ନାମ ତୋ ହେବ ଅମର ।୧୬ ।
ଏହି ଠାରେ ତୋର ଗଡ଼ ଗଢ଼ାଇ
ପୂଜ ମୋ ପୟର ମନ ଲଗାଇ
ହୋଇବ ତୋହର ବହୁ ଉନ୍ନତି
ଦୟା ରହିବ ମୋହର ତୋ ପ୍ରତି
ସେଠାରେ ଗଡ଼ ନିର୍ମାଣୀ,
ଛାଡ଼ି ସବୁ ଭ୍ରାନ୍ତି, ହୃଦେ ବହି ଶାନ୍ତି,
ବାସ କଲେ ସୂର୍ଯ୍ୟମଣି ।୧୭ ।
ସେହି ବଂଶର ରାଜନ ନବମ
ବାଘେଲା ସିଂହ ତାହାଙ୍କର ନାମ
ଏକଦା ଶିକାର କରିବା ପାଇଁ
ଋକ୍ଷି ବଳରାମ ମଧରେ ଯାଇ
ଦେଖିଲେ ସେହି ସ୍ଥାନରେ,
ଆଶ୍ଚର୍ଯ୍ୟ ଘଟଣା, ବୁଦ୍ଧି ହେଲା ବଣା,
ଭାବଇ ରାଜା ମନରେ ।୧୮ ।
ଖାଦ୍ୟ ଖାଦକ ପଛେ ଦଉଡ଼ିଛି
ଶଶକ ଡରେ ଶ୍ୱାନ ପଳାଉଛି
ଜାଣିଲେ ଏ ଏହି ସ୍ଥାନ ମହତ୍ତ୍ୱ
ରହିଛି ନିଶ୍ଚେ ଏହାର ଗୁରୁତ୍ୱ
ସେ ସ୍ଥାନ କରି ଚୟନ,
ଗଢ଼ି ରାଜଧାନୀ, ପାତ୍ର ମିତ୍ର ଘେନି,
କଲେ ତହିଁ ଅବସ୍ଥାନ ।୧୯ ।

ନୂଆ କରି ଗଡ଼ହେଲା ନିର୍ମାଣ
ନୟାଗଡ଼ ନାମ ତା'ର ପ୍ରମାଣ
ନୂଆ ଦୁର୍ଗୁ ନବଦୁର୍ଗ ହୋଇଲା
ବାଘୁଆ ନୟାଗଡ଼ ବୋଲାଇଲା
ଇଷ୍ଟ ଦେବୀ ବାଉରାଣୀ,
ପୟରେ ତାଙ୍କର, ଶତ ନମସ୍କାର,
ପୂଜେ ରାଜା ତାଙ୍କୁ ଆଣି ।୨୦।
ଦ୍ୱାଦଶ ତମ ରାଜା ସେ ବଂଶର
ରଘୁନାଥ ସିଂହ ନାମ ତାଙ୍କର
ପନ୍ଦରଶ ପଞ୍ଚଷଠି ସାଲରେ
ବସିଲେ ସିଏ ଶାସନ ଗାଦିରେ
ମହା ପରାକ୍ରମୀ ରାଜା,
ସାହସ ମନରେ, ଶକତି ଶରୀରେ,
ଶ୍ରଦ୍ଧା କରନ୍ତି ପରଜା ।୨୧।
ଉତ୍କଳର ରାଜା ମୁକୁନ୍ଦଦେବ
ଶତ୍ରୁ ତାଙ୍କ ବଙ୍ଗଳାର ନବାବ
ରାମଚନ୍ଦ୍ର ଭଞ୍ଜ ତା ଗଡ଼ମୁଖ୍ୟ
ହୋଇଣ ନବାବ ପ୍ରତି ବିମୁଖ
ନିଜକୁ ରାଜା କହିଲା,
ରାଜା ଉତ୍କଳର, ମୁକୁନ୍ଦ ଦେବର,
ସହିତ ଲଢ଼େଇ କଲା ।୨୨।
ମୁକୁନ୍ଦ ଦେବ ସମରରେ ହାରି
ଜୀବନ ତାହାର ଗଲା ବାହାରି
କଳାପାହାଡ଼ ଉତ୍କଳକୁ ଆସି
ମାରିଲା ଯୋଦ୍ଧାଙ୍କୁ ଚଳାଇ ଅସି
ମୁସଲମାନ ଶାସନ,
ଉତ୍କଳେ ରହିଲା, ଗଜପତି ଗଲା,
ଦେଶେ ହେଲେ ପରାଧିନ ।୨୩।
ଉତ୍କଳ ହେଲା ଗଜପତିଶୂନ୍ୟ
ଯେତେକ ଥିଲେ ଦେଶୀୟ ରାଜନ
ସ୍ୱାଧୀନତା କେତେ କଲେ ଘୋଷଣା
ଯୁଦ୍ଧ ଯେତେ ହେଲା ନୁହେଁ କଳନା
ପରସ୍ପରର ମଧ୍ୟରେ,
ହେଲେ ଧରାଧରି, ପୁଣି ମରାମରି,
କନ୍ଦଳ ରାଜ୍ୟ ଲୋଭରେ ।୨୪।

ପୁରୀ ଗଜପତି ଅଧିନେ ଥିଲା
ନୟାଗଡ଼ ତା'ର ସୁଯୋଗ ନେଲା
ନିଜକୁ ସ୍ୱତନ୍ତ୍ର କରି ଘୋଷଣା
ରାଜ୍ୟ ବିସ୍ତାରେ କରିଲେ ଯୋଜନା
ଦଳ ବେହେରାଦି ଯୋଦ୍ଧା,
ସଇନ ସଜେଇ, ଚତୁରଙ୍ଗ ନେଇ,
ବାହାରିଲେ ଭୁଲି ବାଧା ।୨୫ ।
ରାଜନୈତିକ ଅସ୍ଥିରତା ମଧ୍ୟେ
ରଘୁନାଥ ସିଂହ ବାହାରି ଯୁଦ୍ଧେ
ରଣପୁର ରାଜା ରାଜ୍ୟ ଉପରେ
ଆକ୍ରମଣ କଲେ ପୂର୍ଣ୍ଣ ଶକ୍ତିରେ
ସମରେ ତାଙ୍କୁ ହରାଇ,
ଓଡ଼ଗାଁ ଅଞ୍ଚଳ, ସେ ଶରଣକୁଳ,
ଆଣିଲେ ବଳେ ଛଡ଼ାଇ ।୨୬ ।
ବାଉଁଶିଆପଡ଼ା ଅଞ୍ଚଳ ସହ
ଘୁମୁସରୁ ସୁନାମୁହିଁ ସମୂହ
ଦଶପଲ୍ଲାକୁ ବୌଦ୍ଧ ରଜା ଠାରୁ
ଆଣିଲେ ଛଡ଼ାଇ ସୈନ୍ୟ ବଳରୁ
ନିଜ ସୀମା ବଢ଼ାଇଲେ,
ମନେ ବହି ଖୁସି, ନବଦୁର୍ଗେ ବସି,
ସୁଖରେ ଶାସନ କଲେ ।୨୭ ।
ଏହି ରାଜା ପ୍ରଭୁ ଲଡୁକେଶ୍ୱର
ମନ୍ଦିରକୁ କରିଲେ ଅଧିକାର
ରଣପୁର ରାଜା ଶାସନ ଗଲା
ନୟାଗଡ଼ ପ୍ରଭୁ କଥା ବୁଝିଲା
ଜମି ବାଡ଼ି ଖଞ୍ଜା କରି,
ସେବା ପ୍ରଭୁଙ୍କର, କରେ ରାଜବର,
ହୃଦୟେ ଭକତି ଭରି ।୨୮ ।
ହରିହର ସିଂହ ପୁତ୍ର ତାଙ୍କର
ଶାସନ ଭାର ଯେ ନୟାଗଡ଼ର
ତାଙ୍କର ଅନ୍ତେ କରିଲେ ଗ୍ରହଣ
ଲଡୁବାବା ପଦେ ନେଇ ଶରଣ
ସୁଖେ ପ୍ରଜାଙ୍କୁ ପାଳନ୍ତି,
ପ୍ରଭୁଙ୍କ ଦର୍ଶନ, କରି ପ୍ରତିଦିନ,
ଧନ୍ୟ ଜୀବନ ମଣନ୍ତି ।୨୯ ।

ତାଙ୍କର ପୁତ୍ର ରାଜା ଗଦାଧର
ଉପେନ୍ଦ୍ର ଭଞ୍ଜ ତା କନ୍ୟାର ବର
ବ୍ରିଟିଶ ଓଡ଼ିଶା ଆସିଲା ଯେବେ
ବିନାୟକ ସିଂହ ରାଜନ ତେବେ
ଜ୍ଞାନୀ ମାନୀ ଗୁଣଗ୍ରାହୀ,
ବାବାଙ୍କୁ ପୂଜଇ, ଖୁସି ମନେ ଯାଇ,
ଭକତି ଭାବକୁ ବହି ।୩୦।

ତାଙ୍କରି ରାଜ କବି ଯଦୁମଣି
ଉତ୍କଳ ଘଣ୍ଟ ବୋଲି ସର୍ବେ ଜାଣି
ରାମ ରାଜ୍ୟ ଥିଲା ତାଙ୍କ ଶାସନ
ଧନଧାନ୍ୟେ ରାଜ୍ୟ ଥିଲା ପୂରଣ
ଦେବ ବ୍ରାହ୍ମଣରେ ଭକ୍ତି,
କରେ ସେ ରାଜନ, ଗୁଣୀ ଚିହ୍ନେ ଗୁଣ,
ପ୍ରଜାଏ ଆନନ୍ଦ ଅତି ।୩୧

ଏ ଇତିହାସ କଲେ ଅନୁଧାନ
ନିର୍ଯ୍ୟାସ ଆସଇ ମତ ଏସନ
ପଞ୍ଚଦଶ ଶତାବ୍ଦୀର ପୂର୍ବରୁ
ରଣପୁର ରାଜା ନିଜ ଚେଷ୍ଟାରୁ
ନିର୍ମାଣିଏହି ମନ୍ଦିର,
ଉଭା ଲିଙ୍ଗ ଶିବ, ପ୍ରଭୁ ମହାଦେବ,
ପୂଜୁଥିଲେ ନିରନ୍ତର ।୩୨।





# ଦ୍ୱାଦଶ ପ୍ରକାଶ

(ପ୍ରଭୁ ଶିବଶଙ୍କରଙ୍କ ଲିଙ୍ଗ ରୂପ ଧାରଣର କାରଣ ଓ
ଲଡୁବାବାଙ୍କର ଲିଙ୍ଗର ଗଠନ ବର୍ଣ୍ଣନ)

ଦକ୍ଷ ପ୍ରଜାପତିଙ୍କର ଯଜ୍ଞରେ
ପତିଙ୍କର ଅପମାନ ଜ୍ୱାଳାରେ
ସହ୍ୟ କରି ନ ପାରି ମାତା ସତୀ
ଯଜ୍ଞକୁଣ୍ଡରେ ଦେଲେ ଆତ୍ମାହୁତି
ଶିବ ହତ ଜ୍ଞାନ ହୋଇ,
ଦକ୍ଷଙ୍କର ଯଜ୍ଞ, ଯାଇ କଲେ ଭଗ୍ନ,
ନାଚିଲେ ଉନ୍ମତ୍ତ ହୋଇ ।୧ ।
ଚପଟେ ଛିଣ୍ଡାଇଲେ ଦକ୍ଷ ଶିର
ତାଣ୍ଡବେ ପୃଥ୍ୱୀ ହେଲା ଥରହର
କ୍ରୋଧେ ଦେହ ଜ୍ଞାନ ଲୋପ ପାଇଲା
କଟି ଦେଶୁ ବ୍ୟାଘ୍ର ଚର୍ମ ଖସିଲା
ନାଚନ୍ତି ଉଲଗ୍ନ ହୋଇ,
ହିତାହିତ ଜ୍ଞାନ, ହୋଇଗଲା ଶୂନ୍ୟ,
କ୍ରୋଧ ଶାନ୍ତି ନ ହୁଅଇ ।୨ ।
ଶିବ କ୍ରୋଧ ଶାନ୍ତ କରିବା ପାଇଁ
ମୈନା ନଇବେଦ୍ୟ ଧରି ଆସଇ
ଦେଖି ଶିବଙ୍କର ଉଲଗ୍ନ ରୂପ
ତାହାଙ୍କୁ କ୍ରୋଧେ ଦେଲେ ଅଭିଶାପ
ମାତୃ ତୁଲ୍ୟ ମୁଁ ତୁମର,
ହୋଇଣ ଉଲଗ୍ନ, ଲିଙ୍ଗ ପ୍ରଦର୍ଶନ,
ସମ୍ମୁଖେ କରିଲ ମୋର ।୩ ।
ତେଣୁ ତୁମେ ଯୁଗେ ଯୁଗେ ମହିରେ
ପୂଜା ପାଇବ ଲିଙ୍ଗ ସ୍ୱରୂପରେ
ସେହି ଦିନ ଠାରୁ ଶିବ ସଂସାରେ
ଲିଙ୍ଗ ରୂପେ ପୂଜ୍ୟ ସବୁ ସ୍ଥାନରେ
ଶକ୍ତି ସହ ଯୁକ୍ତ ହୋଇ,
ପୂଜା ପାଉଛନ୍ତି, ଭକ୍ତେ ଉଦ୍ଧାରନ୍ତି,
ଆଶୁତୋଷ ଭକ୍ତ ପାଇଁ ।୪ ।

ଦୁଇ ପ୍ରକାରର ମିଳନ୍ତି ଲିଙ୍ଗ
ମନୁଷ୍ୟକୃତ ପୁଣି ବାଣ ଲିଙ୍ଗ
ପ୍ରାକୃତିକ ରୂପରେ ଯେ ମିଳନ୍ତି
ଶକ୍ତି ସଲଗ୍ନ ହୋଇ ନ ଥାଆନ୍ତି
ବାଣଲିଙ୍ଗ ଅଟେ ଇଏ,
ପ୍ରାକୃତିକ ରୂପେ, ଶଙ୍କର ସ୍ୱରୂପେ,
ମହା ଫଳ ଦାୟୀ ସିଏ ।୫ ।
ମିଳନ୍ତି ନର୍ମଦା ନଦୀ ଶଯ୍ୟାରେ
ପ୍ରସିଦ୍ଧ ନର୍ମଦେଶ୍ୱର ନାମରେ
ସାଧକ ତାହାଙ୍କୁ ସାଥିରେ ଧରି
ଯାଆନ୍ତି ଯୁଆଡ଼େ ମନ ତାଙ୍କରି
ଶକ୍ତିରୂପି ଆସନରେ
ରଖିଣ ପୂଜନ୍ତି, ଅର୍ଚ୍ଚନ କରନ୍ତି,
ବାଣଲିଙ୍ଗ ଆନନ୍ଦରେ ।୬ ।
ମନୁଷ୍ୟକୃତ ଲିଙ୍ଗ ସ୍ୱରୂପରେ
କେତେ ମିଳନ୍ତି ସ୍ଫଟିକ ରୂପରେ
ପାରଦର ଲିଙ୍ଗ ପୁଣି ଶିଳାର
ରୁଦ୍ରାକ୍ଷ ରୂପେ ମିଳନ୍ତି ଈଶ୍ୱର
ଯେଉଁଠି ଯେହ୍ନେ ମିଳନ୍ତି,
କରିଲେ ପୂଜନ, ଭକ୍ତ ମନସ୍କାମ,
ନିଶ୍ଚେ ପୂରଣ କରନ୍ତି ।୭ ।
ବରଫ ଲିଙ୍ଗ ଅମରନାଥର
ଅଥବା ଯେତେ ଲିଙ୍ଗ ଅବତାର
ମହାପୁରୁଷ ମାନଙ୍କ ହସ୍ତରେ
ସ୍ଥାପିତ ହୋଇ ଅଛନ୍ତି ମହିରେ
ଜ୍ୟୋତିର୍ଲିଙ୍ଗ କହି ତାରେ,
ଏ ମହି ମଣ୍ଡଳେ, ସେ ଲିଙ୍ଗ ସକଳେ,
ଅଛନ୍ତି ଶିବ ରୂପରେ ।୮ ।
ଯେତେକ ଲିଙ୍ଗ ସ୍ୱୟଂ ପ୍ରକଟିତ
ଶରୀର ତାଙ୍କ ଶିଳାରେ ନିର୍ମିତ
ଉଭା ଲିଙ୍ଗ ତାଙ୍କୁ ଲୋକେ କହନ୍ତି
ନୟାଗଡ଼େ ଦ୍ୱାଦଶାର୍ଦ୍ଧ ଅଛନ୍ତି
ସର୍ବେ ସ୍ୱୟଂ ପ୍ରକାଶିତ,
ତାହାଙ୍କ ମହିମା, ଗୁଣାଦିର ସୀମା,
ବାସ୍ତବେ ଅଟେ ଅନନ୍ତ ।୯ ।

ଲିଙ୍ଗରୂପି ଲଡୁବାବା ଶରୀର
ସ୍ୱୟମ୍ଭୁ ପ୍ରକୃତି ସୃଷ୍ଟ ଶିଳାର
ଫୁଟାଲିଙ୍ଗ ତାଙ୍କୁ କହନ୍ତି ଲୋକେ
ସ୍ୱୟଂଫୁଟ ବାହାରିଛନ୍ତି ଲୋକେ
ଅଲୌକିକ ରୂପଧର,
ଡାକିଲେ ଶୁଣନ୍ତି, ଦୁଃଖ ନିବାରନ୍ତି,
ସ୍ୱୟମ୍ଭୁ ଲଡୁକେଶ୍ୱର ।୧୦।
ହେ ସୁଜ୍ଞଜନେ ଶୁଣ ଦେଇ ମନ
କହୁଛି ପ୍ରଭୁଙ୍କ ଲିଙ୍ଗ ଗଠନ
ପ୍ରଭୁଙ୍କର ଲିଙ୍ଗଛତ୍ର ଆକାର
ପୂର୍ଣ୍ଣଚନ୍ଦ୍ର ପ୍ରାୟ ରୂପ ତାଙ୍କର
ମଝିରେ ପଇତା ଚିହ୍ନ,
ଏକ ପାର୍ଶ୍ୱେ ହର, ଅନ୍ୟେ ଚକ୍ରଧର,
ହରିହର ଦୁଇ ଜଣ ।୧୧।
କପିଳାଗାଈର ଦୁଇ ଗୋଷ୍ପାଦ
ଦର୍ଶନେ ଛାଡ଼ିଣ ଯାଏ ପ୍ରମାଦ
ଏକ ପାର୍ଶ୍ୱେ ଚନ୍ଦ୍ରବିମ୍ୱଟି ଶୋହେ
ଜଟାଧରଙ୍କର ଗାରିମା କହେ
ଲିଙ୍ଗ ଏହି ଅଲୌକିକ,
ଅନାଦି କାଳରୁ, ସଂସାର ସାଗରୁ,
ଭକତଙ୍କ ଉଦ୍ଧାରକ ।୧୨।
ଟଙ୍କା ଚିନି ଲହୁଣି ପ୍ରତିଦିନ
ପ୍ରଭୁଙ୍କ ଉପରେ ହୁଏ ମର୍ଦ୍ଦନ
ଲୁଗାରେ ପୋଛା ହୁଏ ବହୁବାର
ଜଳ ଲାଗି ହୁଅଇ ବାରବାର
ଲିଙ୍ଗଙ୍କର ଚମତ୍କାର,
ଲିଙ୍ଗଙ୍କ ରୂପରେ, ଅବା ଚିକ୍କଣରେ,
ବଦଳି ନାହିଁ ଆକାର ।୧୩।
ଶକ୍ତି ଘେରି ରହିଛନ୍ତି ଲିଙ୍ଗଙ୍କୁ
ନାଗ କୁଣ୍ଡଳୀ କରିଛନ୍ତି ତାଙ୍କୁ
ଅଲୌକିକ ଲିଙ୍ଗ ଅଟନ୍ତି ଏଇ
ଯାହା ମନାସିଲେ ତାହା ଦିଅଇ
ପ୍ରତ୍ୟକ୍ଷ ଲଡୁକେଶ୍ୱର,
ନାଶନ୍ତି ଯେତକ, ଭକତ ପାତକ,
ଦର୍ଶନେ ଲିଙ୍ଗ ତାଙ୍କର ।୧୪।



# ତ୍ରୟୋଦଶ ପ୍ରକାଶ

(ଲଡ୍ଡୁବାବାଙ୍କ ମନ୍ଦିରରେ ପାଳିତ ହେଉଥିବା ଯାତ୍ରା ଓ ପର୍ବପର୍ବାଣୀ
ଗୁଡ଼ିକର ତିଥି ଓ ନୀତି ବର୍ଣ୍ଣନ)

ଭକତ ଜନେ ମନ ଦେଇ ଶୁଣ
କହିବି ପ୍ରଭୁ ଯାତ୍ରା ବିବରଣ
ଯାତ୍ରାଙ୍ଗୀ ସହିତ ପର୍ବପର୍ବାଣୀ
ପାଳିତ ହୁଏ ଯା'ତାର କାହାଣୀ
ଲଡ୍ଡୁବାବା ମନ୍ଦିରରେ,
ସେବାସୀ ଭକତ, ହୋଇଣ ଏକତ୍ର,
ଭାଗ ନିଅନ୍ତି ଖୁସିରେ ।୧ ।
ଶ୍ରାବଣ ମାସର ଅମାବାସ୍ୟାରେ
ଚିତାଲାଗି ପରବ ମନ୍ଦିରରେ
ଦେଉଳ ଶୋଧା ହୁଅଇ ସକାଳେ
ଧୂପରେ ଘଣ୍ଟ ବାଜୁଥିବା ବେଳେ
ଚିତ୍ତୋଉ ପିଠାର ଭୋଗ,
ଲାଗି ହୁଏ ପ୍ରଭୁ, ଲଡ୍ଡୁବାବା ଶମ୍ଭୁ,
ପାଖରେ ମନ୍ଦିରେ ଆଗ ।୨ ।
ଶ୍ରାବଣ ଶୁକଳ ଚତୁର୍ଦ୍ଦଶୀରେ
କ୍ଷୀରାଭିଷେକ, ପୁଡ଼ାଭୋଗ ପରେ
ଯାତ୍ରାଙ୍ଗୀ ନୀତିର ପରେ ଶ୍ରାବଣୀ
ଭୋଗହୁଏ ପ୍ରଭୁଙ୍କ ମନ ଜାଣି
ନଡ଼ିଆ ପଇତା ଲାଗି,
ପୁରୋଧା କରନ୍ତି, ବନ୍ଦାପନା ନୀତି,
ଏକ ପରେ ଏକ ବେଗି ।୩ ।
ଶ୍ରାବଣ ପୂର୍ଣ୍ଣିମା ଗହ୍ମା ପରବ
ସକାଳ ଧୂପେ ଘଣ୍ଟ ବାଜୁଥିବ
ନଡ଼ିଆ ପଇତା ଲାଗି ହୁଅଇ
ତାହାପରେ ମନ୍ଦିର ଶୋଧ ହୋଇ
ମଣ୍ଡାପିଠା ଧୂପ ହେବ,
ମଣ୍ଡାପିଠା ଖାଇ, ସନ୍ତୋଷ ହୁଅଇ,
ଆଶୁତୋଷ ସଦାଶିବ ।୪ ।

ଭାଦ୍ରବ କୃଷ୍ଣ ଅଷ୍ଟମୀ ତିଥିରେ
ସନ୍ଧ୍ୟା ଧୂପ ସରିଲେ ମନ୍ଦିରରେ
ଜଗନ୍ନାଥଙ୍କ ମନ୍ଦିରରେ ଯାଇ
ଶ୍ରୀକୃଷ୍ଣ ଜନ୍ମ ବିଧାନ ହୁଅଇ
ଜନ୍ମ ଉତ୍ସବେ ଭକତ,
ଉପବାସେ ବ୍ରତେ, ଥାଆନ୍ତି ସମସ୍ତେ,
ଆନନ୍ଦ ସବୁରି ଚିତ୍ତ ।୫ ।

ଭାଦ୍ରବ କୃଷ୍ଣ ନବମୀ ଆସିଲେ
ଦିନ ଚାରିଟା ସମୟ ହୋଇଲେ
ବାଳମୁକୁନ୍ଦ ଗୋପୀନାଥ ଦୁଇ
ଚଉଧଳ ବିମାନେ ବିଜେ ହୋଇ
ଗ୍ରାମର ପରିକ୍ରମାରେ,
ଛତିତ୍ରାସ ନେଇ, ଘଣ୍ଟକୁ ବଜାଇ,
ଯାନ୍ତି ଚାଳିମଣ୍ଡପରେ ।୬ ।

ଚାଳିମଣ୍ଡପେ ଚାଳି ଭୋଗଖାଇ
ଦ୍ୱାରେ ଦ୍ୱାରେ ଦ୍ୱାର ଭୋଗ ହୁଅଇ
ଭିକାରିପଡ଼ାର ବିଭାମଣ୍ଡପ
ସେଠି ହୁଏ ସର ଲବଣୀ ଧୂପ
ନନ୍ଦ ଉତ୍ସବ ଏପରି,
ହୁଅଇ ପାଳନ, ଦେଖି ସର୍ବଜନ,
ଆନନ୍ଦ ମନ ସବୁରି ।୭ ।

ଭାଦ୍ର ଅମାବାସ୍ୟାରେ ସପ୍ତପୁରି
ପ୍ରଭୁଙ୍କୁ ଭୋଗ ହୁଏ ସାତ ପୁରି
ସକାଳର ଅବକାଶ ସରିଲେ
ଠାକୁରାଣୀଙ୍କ ଠାରୁ ଧଣ୍ଡି ଭଲେ
ସର ଘରକୁ ପୂଜକ,
ଘଣ୍ଟ ତ୍ରାସ ନେଇ, ଝଟତିରେ ଯାଇ,
ନିଅନ୍ତି ସବୁ ସେବକ ।୮ ।

ଘଣ୍ଟ ଯେ ବାଜୁଥିବ ଭୋଗ ପରେ
ପଣ୍ଡା ଥିବେ ପ୍ରଭୁଙ୍କ ସମୀପରେ
ଛତିଶା ନିଯୋଗରେ ସାତପୁରି
ଉତ୍ତରରେ ସର ଘରୁ ବାହାରି
ମନ୍ଦିରକୁ ପୂର୍ବ ଦ୍ୱାରେ,
ଯାଇ ଧୂପ ହେବ, ଶାଢ଼ୀ ବାହାରିବ,
ଯିବ ପୁଣି ସରଘରେ ।୯ ।

ଭାଦ୍ର ଶୁକ୍ଳ ଦ୍ୱାଦଶୀ ନୂଆଖିଆ
ଅଙ୍କେ ବଲ୍ଲଭେ ଚୂଡ଼ା ଭୋଗ ନୂଆ
ନବଅନ୍ନ ସକାଳ ଧୂପ ପରେ
ଅର୍ପଣ ହୁଏ ପ୍ରଭୁଙ୍କୁ ଭକ୍ତିରେ
ପ୍ରଭୁଙ୍କୁ ଦିଅନ୍ତି ଭେଟି,
ତତ୍ତ୍ୱାବଧାରକ, ରାଜାଙ୍କ ସେବକ,
ରୂପରେ ଦିଅନ୍ତି ଭେଟି ।୧୦।

ଆଶ୍ୱିନ ମାସର କୃଷ୍ଣ ଅଷ୍ଟମୀ
ମନ୍ଦିରରେ ନାମ ତା ମୂଳାଷ୍ଟମୀ
ନୟାଗଡ଼ ବାଉତୀ ଠାକୁରାଣୀ
ପୂଜକ ଚାଉଳ ଓ ଗୁଆ ଆଣି
ଚଣ୍ଡି ପୂଜକଙ୍କୁ ଦେଲେ,
ପାର୍ବତୀଙ୍କଠାରେ, ମନ୍ଦିର ଭିତରେ,
ଷୋହଳ ପୂଜା ଯେ ଚାଲେ ।୧୧।

ସହସ୍ର କୁମ୍ଭ ଆରମ୍ଭ ହୁଅଇ
ମନ୍ଦିର ପୂଜକ ସଂଖ୍ୟା କରଇ
ଷୋଳ ଦିନ ଧରି ଏ ପୂଜା ଚାଲେ
ଚଣ୍ଡି ପାଠକ ଚଣ୍ଡିପାଠ ବୋଲେ
ମାତାଙ୍କ ଆଶିଷ ପାଇଁ,
ରାଜଗୋଡ଼ା ବେଲ୍ଲୁ, କାହିଁ କେଉଁ କାଲୁ,
ଏହି ମନ୍ଦିରେ ଚାଲଇ ।୧୨।

ଷଷ୍ଠୀ ସପ୍ତମୀ ଓ ଅଷ୍ଟମୀ ଦିନ
ଆମିଷ ଭୋଗ ହୁଅଇ ରନ୍ଧନ
ବାବା ମନ୍ଦିର ବନ୍ଦ ହେବା ପରେ
ଆମିଷ ନୀତି ମାଆଙ୍କ ମନ୍ଦିରେ
ହୁଏ ସ୍ୱତନ୍ତ୍ର ରୀତିରେ,
ଚୁଲି ଓ କଡ଼େଇ, ସଂସ୍କାର ହୁଅଇ,
ନିତି ଗୋମୟ ଜଳରେ ।୧୩।

ହୁଅଇ ଦଶହରା ଦଶମୀରେ
ଠାକୁର ଠାକୁରାଣୀ ମହନରେ
ସେଇଠି ପ୍ରଭୁଙ୍କ ଧୂପ ହୁଅଇ
ଠାକୁରଙ୍କୁ ନାନା ଭେଟି ମିଳଇ
ସେବାସୀ ଆଉ ଭକତ,
ଆନନ୍ଦେ ଭକ୍ତିରେ, ସାଧ ଅନୁସାରେ,
ଭେଟି କରନ୍ତି ପ୍ରଦତ୍ତ ।୧୪।

ତା ପରେ ଦୁହେଁ ଏକ ବିମାନରେ
ଜୟଦୁର୍ଗା ବିଜେ ସିଂହ ଉପରେ
ପୂରୁବ ଦୁଆରେ ହୋଇ ଆଳତୀ
ଚାଳିମଣ୍ଡପକୁ ସର୍ବେ ଚଳନ୍ତି
ଭୋଗ ଖାଇ ସେହିଠାରେ,
ସେଠାରୁ ବାହାରି, ପରିକ୍ରମା କରି,
ଫେରନ୍ତି ନିଶା ରାତିରେ ।୧୫।

ଆଶ୍ୱିନ ଶୁକ୍ଳ ଏକାଦଶୀ ହେଲେ
ଦାମୋଦର ଭୋଗ ହୁଅଇ ଭଲେ
କାର୍ତ୍ତିକ ଦଶମୀ ତିଥି ପର୍ଯ୍ୟନ୍ତ
ଏ ଭୋଗ ହୁଅଇ ମନ୍ଦିରେ ନିତ୍ୟ
ଏକାଦଶୀ ନାମ ଯାର,
ଭକତ ଜୀବନ, ପ୍ରଭୁ ପଞ୍ଚାନନ,
ଭକ୍ତ ଦୁଃଖ କରେ ଦୂର ।୧୬।

ଆଶ୍ୱିନ ମାସେ କୁମାର ପୂର୍ଣ୍ଣିମା
ସୁଖ ବିନା ଦୁଃଖ ନ ଥାଏ ଜମା
ଠାକୁରେ ନୂତନ ବସ୍ତ୍ର ପିନ୍ଧନ୍ତି
କଉଡ଼ି ଖେଳ ଠାକୁରେ ଖେଳନ୍ତି
କାର୍ତ୍ତିକଙ୍କର ପାଖରେ,
ସ୍ୱତନ୍ତ୍ର ପ୍ରକାର, ଚତୁସମ ପରେ,
ଧୂପ ହୁଅଇ ନୀତିରେ ।୧୭।

କାର୍ତ୍ତିକ ଅମାବାସ୍ୟା ଦୀପାବଳୀ
ପବିତ୍ରତା ତାର ନୁହଁଇ କଳି
ମନ୍ଦିର ଉପରେ ଦୀପ ଲାଗିଲେ
ଟେରା ଫିଟା ନୀତି ହୁଅଇ ଭଲେ
ପ୍ରଭୁଙ୍କର ଆଶିଷରେ,
ଭାଗ୍ୟ ଭକତର, ଅନ୍ଧକାର ଦୂର,
ହୁଅଇ ପ୍ରଭୁ କୃପାରେ ।୧୮।

କାର୍ତ୍ତିକ ଶୁକ୍ଳ ପ୍ରତିପଦା ଦିନ
ପରବ ପୂଜା ଗିରି ଗୋବର୍ଦ୍ଧନ
ମନ୍ଦିରେ ଚତୁସମ ନୀତି ପରେ
ଏ ନୀତିରେ ଜଗନ୍ନାଥ ମନ୍ଦିରେ
ପୂଜା ପାଆନ୍ତି ଭଣ୍ଡାର,
ସବୁ ବିପଦରେ, ସବୁ ଆପଦରେ,
ରକ୍ଷାକର୍ତ୍ତା ସେ ଆମର ।୧୯।

କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ତିଥିରେ
ଯମ ଦ୍ୱିତୀୟା ଯାତ୍ରା ମନ୍ଦିରରେ
ବନ୍ଦାପନା ପରେ ଖଟଣୀ ପୂଜା
ଦ୍ୱିପହର ଧୂପ ତାପରେ ସଜା
ଯମ ଭୟରୁ ଈଶ୍ୱର,
ତାରନ୍ତି ଭକତେ, ଯେ ଡାକେ ଆରତେ,
ନିଷ୍ଠା ରଖିତା ମନର ।୨୦।
କାର୍ତ୍ତିକର ଶୁକ୍ଳ ଏକାଦଶୀରେ
ପଞ୍ଚୁକ ଯାତ୍ରା ଆରମ୍ଭ ମନ୍ଦିରେ
ନିତି ହୁଏ ପଞ୍ଚୁ କୁଡୁଆ ଭୋଗ
ସନ୍ଧ୍ୟା ଧୂପ ହୁଅଇ ତାହା ଆଗ
ରାସେ ଚତୁସମ ପରେ,
ରାହାସ ବିହାରୀ, ଯାଆନ୍ତି ବାହାରି,
ଧୂପ ହୁଏ ସେହି ଠାରେ ।୨୧।
କାତିକ ମାସ ଶୁକ୍ଳ ଚତୁର୍ଦ୍ଦଶୀ
ଶିବ ଉତଥାପନ ଚତୁର୍ଦ୍ଦଶୀ
ଟେରାଫିଟା ସରିଲେ ଏହି ଦିନ
ହୁଅଇ ଯାତ୍ରାଙ୍ଗୀ ନୀତି ପ୍ରମାଣ
ଚତୁର୍ଦ୍ଦଶୀ ଧୂପ ଆଗେ,
ବନ୍ଦାପନା ଧୂପ, ପଛେ ସନ୍ଧ୍ୟା ଧୂପ,
ଏ ଦିନ ହୁଅଇ ବାଗେ ।୨୨।
କାର୍ତ୍ତିକ ପୂର୍ଣ୍ଣିମା ଅତି ପବିତ୍ର
ଭୋଅରୁ ଆସିଣ ସବୁ ଭକତ
ମନ୍ଦିରେ କରନ୍ତି ଭାରି ଗହଳି
ବଜାନ୍ତି ମୃଦଙ୍ଗ ଘଣ୍ଟ କାହାଳୀ
ଧର୍ମମାସ ବୋଲି ଆସି,
ନାମ ସଂକୀର୍ତ୍ତନ, ଭଜନ ଜଣାଣ,
ଗାଆନ୍ତି ଭକତେ ବସି ।୨୩।
ଭୋରୁ ଦୀପ ପୁରୋହିତ ବସାଇ
ମଙ୍ଗଳ ଆରତୀ ଯାଇ କରଇ
ହେବା ପରେ ପ୍ରଭୁ କ୍ଷୀରାଭିଷେକ
ଆଖୁ ରସେ ହୁଅନ୍ତି ଅଭିଷେକ
ସେବକ ବାନ୍ଧଇ ନେତ,
ପରିଛା ଦେଖନ୍ତି, ଟେକା ହୁଏ ଛତି,
ରହି ତହିଁ ଉପସ୍ଥିତ ।୨୪।

ମାର୍ଗଶିର କୃଷ୍ଣ ଦ୍ୱିତୀୟା ତିଥି
ଯମ ଦ୍ୱିତୀୟା ନାମେ ତା ପ୍ରସିଦ୍ଧି
ଦୀପ ଲାଗିଲେ ହୁଏ ଅବକାଶ
ଏ ଦିନର ପୂଜା ଅଟେ ବିଶେଷ
ପୁନଶ୍ଚ ବସିଲେ ଦୀପ,
ପ୍ରଭୁଙ୍କ ନିମନ୍ତେ, ନିମଗ୍ନ ସମସ୍ତେ,
ହୁଅଇ ସକାଳ ଧୂପ ।୨୫ ।
ଧୂପ ପରେ ହୁଏ କ୍ଷୀରାଭିଷେକ
ପଞ୍ଚ ଅମୃତେ ପାଞ୍ଚ ଅଭିଷେକ
ଅଟା ଗରମ ଜଳେ ଲିଙ୍ଗ ଶୁଦ୍ଧି
କରନ୍ତି ସେବକ ଯା ଅଛି ସିଦ୍ଧି
ଖୁରୁମା ସାଥେ ଗୋପାଳ,
ଉଖୁଡ଼ା ନଡ଼ିଆ, ପ୍ରଭୁଙ୍କୁ ବଢ଼ିଆ,
ଭୋଗ ହୁଅଇ ସକଳ ।୨୬ ।
ପ୍ରଭୁଙ୍କ ବେଢ଼ା ହୁଏ ତାହା ପରେ
ଧୂପ ହୁଅଇ ମହନ ଭିତରେ
ମନ୍ଦିରରୁ ଶାଢ଼ୀ ବାହାର ହୋଇ
ସର ଘରକୁ ସେ ଦିନ ଯାଅଇ
ଯମ ଦ୍ୱିତୀୟାର ବିଧି,
ଯାହାକୁ ଯେମିତି, ଖଞ୍ଜିଛି ସେମିତି,
ଈଶ୍ୱରଙ୍କ ପାଇଁ ବିଧି ।୨୭ ।
ତିଥି ମାର୍ଗଶିର କୃଷ୍ଣ ଅଷ୍ଟମୀ
ମନ୍ଦିରେ ତା ନାମ ପ୍ରଥମାଷ୍ଟମୀ
ଏଣ୍ଡୁରୀ ବିଶେଷେ ଭୋଗ ହୁଅଇ
ନୂଆ ଲୁଗା ନଡ଼ିଆ ଲାଗି ଥାଇ
ଯାତ୍ରାଙ୍ଗୀ ଧରନ୍ତି ଭକ୍ତେ,
ବର୍ଷେ ପରିଯନ୍ତେ, ନିଷ୍ଠାରେ ସମସ୍ତେ,
ରହିଥାନ୍ତି ଅବିରତେ ।୨୮ ।
ମାର୍ଗଶିର ମାସର ଅମାବାସ୍ୟା
ସେହିଟି ଦୀପାବଳୀ ଅମାବାସ୍ୟା
ଦେବ ଦୀପାବଳୀ ନାମ ତାହାର
ମନ୍ଦିରେ,ଭିତରେ ଆଉ ବାହାର
ସବୁଠି ଦ୍ୱୀପ ଲାଗଇ,
ଦେବଦେବୀ ଆଗେ, ନିଶ୍ଚେ ଦୀପ ଲାଗେ,
ଆଲୋକୋତ୍ସବଟି ଏଇ ।୨୯ ।

ଶୁକ୍ଳ ଷଷ୍ଠୀ ତିଥି ମାର୍ଗଶୀରର
ଓଢ଼ଣ ଷଷ୍ଠୀ ନାମଟି ଯାହାର
କ୍ଷୀର ଅଭିଷେକ ନୀତିଟି ପରେ
ଘୋଡ଼ ସଜ ହୋଇ ତିନି ଥାଳିରେ
ଦକ୍ଷିଣ ଦୁଆର ଠାରେ,
ଛତିଶା ନିଯୋଗେ, ବାହାରିଣ ବାଗେ,
ଯିବ ଗମ୍ଭୀରା ଭିତରେ ।୩୦ ।

ଜଗନ୍ନାଥଙ୍କର ପଣ୍ଡା ବାଟରେ
ଠାକୁରାଣୀ ପଣ୍ଡା ଆସି ସାଥିରେ
ଯିଏ ଯାହା ଘୋଡ଼ ତହିଁରୁ ନେଇ
ପ୍ରଭୁଙ୍କ ଉପରେ ଦେବେ ଘୋଡ଼ାଇ
ହେବ ବନ୍ଦାପନା ନୀତି,
ମାନୁଷୀ ଲୀଳାଏ, ଯେଣୁ ଶୀତ ହୁଏ,
ଘୋଡ଼ି ହୁନ୍ତି ପ୍ରଭୁ ନିତି ।୩୧ ।

ସକାଳରେ ଧନୁ ସଂକ୍ରାନ୍ତି ଦିନ
ଧଣ୍ଡି ହୁଏ ଜାଣି ପ୍ରଭୁଙ୍କ ମନ
ଧନୁମୁଆଁ ସକାଳ ଧୂପ ପରେ
ଆସେ ଦୁଇ ଥର ଥର ଥରରେ
ପରେ ଶାଢ଼ୀ ବାହାରିବ,
ମକର ମାସନ୍ତ, ମାସଟେ ପର୍ଯ୍ୟନ୍ତ,
ଧନୁ ମୁଆଁ ପୂଜା ହେବ ।୩୨ ।

ଅମାବାସ୍ୟାଟି ପଉଷ ମାସର
ବକୁଳ ଅମାବାସ୍ୟା ନାମ ତାର
ଦୁଇ ପହରର ଧୂପ ସାଥିରେ
ବଉଳ ଓ ଅଟକାଳୀ ଭୋଗରେ
ପ୍ରଭୁଙ୍କୁ ହୁଏ ଅର୍ପଣ,
ଋତୁ ଅନୁସାରେ, ଭକ୍ତ ଦିଏ ତାରେ,
ଭୋଗ,ଖୁସି ପ୍ରଭୁ ମନ ।୩୩ ।

ପୁଷ ପୂର୍ଣ୍ଣମୀରେ ପୁଷମଣ୍ଡାଟି
ଖୋଜୁଥାଏ ସଦା ପ୍ରଭୁଙ୍କ ପାଟି
ସକାଳର ଧୂପ ସରିଲେ ପୁଣ
ନଡ଼ିଆ ପଇତା ହୁଏ ଅର୍ପଣ
ହୁଏ ପୁଣି ବନ୍ଦାପନା,
ମଣ୍ଡାପିଠା ଖାଇ, ପ୍ରଭୁ ଖୁସି ହୋଇ,
ଶୁଣନ୍ତି ଭକ୍ତ ପ୍ରାର୍ଥନା ।୩୪ ।

ମକର ସଂକ୍ରାନ୍ତିର ପୂର୍ବଦିନ
ଟେରା ପରେ ପ୍ରଭୁ ବେଶ ହୋଇଣ
ବୃଷଭ ଚାରିପଟେ ଛଅ ବେଢ଼ା
ମନ୍ଦିର ଚତୁଃପାର୍ଶ୍ୱେ ତିନି ବେଢ଼ା
ବୁଲି ଭିତରକୁ ଯିବେ,
ନବାଙ୍କର ଧୂପ, ପରେ ସନ୍ଧ୍ୟା ଧୂପ,
ପୂଜକ ନୀତି କରିବେ ।୩୫ ।
ସଂକ୍ରାନ୍ତି ସହ ଚତୁର୍ଦ୍ଦଶୀ ଥିଲେ
ଆହୁରି ତିନି ଥର ବେଢ଼ା ବୁଲେ
ଦକ୍ଷିଣ ଦ୍ୱାରେ ଆଳତୀ ହୁଅଇ
ଏକ ଠାବରେ ହୁଏ ଧୂପ ଦୁଇ
ନବାଙ୍କ ଓ ଚତୁର୍ଦ୍ଦଶୀ,
ପ୍ରଭୁଙ୍କର ଲୀଳା, ଭକ୍ତ ଭେଳା ଭେଳା,
ଦେଖନ୍ତି ମନ୍ଦିରେ ଆସି ।୩୬ ।
ଧଣ୍ଡି ହୁଏ ମକର ସଂକ୍ରାନ୍ତିରେ
ସକାଳ ବେଳା ନୀତି ହେବା ପରେ
ସଂପର୍ଣ୍ଣ ହେଲେ ସରକାରୀ ନୀତି
ପ୍ରଭୁ ତିନି ଘେରା ବେଢ଼ା ବୁଲନ୍ତି
ସର ଘରରୁ ମକର,
ଉତ୍ତର ପାର୍ଶ୍ୱରେ, ଯାଇ ପୂର୍ବ ଦ୍ୱାରେ,
ଆସେ ମନ୍ଦିର ଭିତର ।୩୭ ।
ଭିତର ସିଂହଠି ଘଣ୍ଟ ବାଜିବ
ମକର ଓ ଖଟଣୀ ପୂଜା ହେବ
ଦ୍ୱିପହର ଧୂପ ସାଥେ ତାହାର
ବନ୍ଦାପନା ପୁଣି ହେବ ସତ୍ତ୍ୱର
ଶାଢ଼ୀ ହେବ ତାହା ପରେ,
ମକରସଂକ୍ରାନ୍ତି, ଦିନର ଏ ନୀତି,
ଶୁଣ ହେ ଧୀରେ ସଧିରେ ।୩୮ ।
ମାଘ ମାସ ଶୁକ୍ଳ ପଞ୍ଚମୀ ଦିନ
ସରସ୍ୱତୀଙ୍କର ହୁଏ ପୂଜନ
ବସନ୍ତ ପଞ୍ଚମୀ ନାମ ତାହାର
ମନ୍ଦିରୁ ବାହାରି ଚନ୍ଦ୍ରଶେଖର
ଦୋଳବେଦୀକୁ ଯାଆନ୍ତି,
ଧୂପ ସେଠିହୋଇ, ଶାଢ଼ୀ ବାହାରଇ,
ବସନ୍ତ ଭୋଗ ଖାଆନ୍ତି ।୩୯ ।

ମାଘର ଶୁକ୍ଳ ସପ୍ତମୀ ତିଥିରେ
କ୍ଷୀରାଭିଷେକ ନୀତି ହେବା ପରେ
ବନ୍ଦାପନା ପୂର୍ବୁ ସର୍କାରୀ ନୀତି
ଖଟଣୀ ପୂଜା ପଣ୍ଡାଏ କରନ୍ତି
ଟେରା ପରେ ବାଉଁଶିଆ,
ମହାଆଡ଼ମ୍ବରେ, ଯାଆନ୍ତି ଠାକୁରେ,
ହୁଏ ସେଠି ଭୋଗଖିଆ ।୪୦ ।
କୃଷ୍ଣ ଚତୁର୍ଦ୍ଦଶୀ ମାସ ଫାଲଗୁନ
ଜାଗର ଯାତ୍ରା ହୁଏଏହି ଦିନ
ନିର୍ଜଳ ରହି ଭକ୍ତେ ଦିନ ସାରା
ଆସନ୍ତି ମନ୍ଦିରେ ଦେଖି ଯାତରା
ସନ୍ଧ୍ୟାରୁ ଦୀପ ଲଗାଇ,
ଜାଳନ୍ତି ଜାଗର, ରହି ଉଜାଗର,
ପ୍ରଭୁଙ୍କୁ ତୋଷିବା ପାଇଁ ।୪୧ ।
ଆନ୍ଧ୍ର ଫୁଲବାଣୀ ଖୋର୍ଦ୍ଧା କଟକ
ନୟାଗଡ଼ ପୁରୀ ଗଞ୍ଜାମ ଲୋକ
ମନରେ ଭକତି ଭାବକୁ ବହି
ଆସନ୍ତି ଧରିଣ ସଙ୍ଗାତ ସହି
ନେଇ ଭିନ୍ନଭିନ୍ନ ଯାନ,
ଶରଣକୁଳଟି, ଯାଅଇ ପାଲଟି,
ଲୋକମାନଙ୍କ ଅରଣ୍ୟ ।୪୨ ।
ଦୋକି ସରକସ ବହୁ ଦୋକାନ
କଳାକୁଞ୍ଜ ଅପେରା ଭିନ୍ନ ଭିନ୍ନ
ସୂଚନା କେନ୍ଦ୍ର ଓ ଜଳ ଯୋଗାଣ
କରନ୍ତି ଭିନ୍ନ ଧର୍ମ ଅନୁଷ୍ଠାନ
ସ୍ୱେଚ୍ଛାସେବୀ ଅନୁଷ୍ଠାନ,
ଯେ ଯାହା ପ୍ରକାରେ, ପ୍ରଭୁଙ୍କ ସେବାରେ,
ଲଗେଇ ଥାଆନ୍ତି ମନ ।୪୩ ।
ମନ୍ଦିରକୁ ପୂର୍ବରୁ ରଙ୍ଗକରି
ଆଲୋକ ସଜ୍ଜାକୁ କେ ନୁହେଁ ସରି
ନୂଆବୋହୁ ପରି ସଜେଇ ହୋଇ
ଅପସରିଟିଏ ପରି ଲାଗଇ
ଭକ୍ତଙ୍କ ବାବା ଡାକରେ,
କମ୍ପଇ ଜଗତ, କମ୍ପେ ସ୍ୱର୍ଗ ମର୍ତ୍ତ୍ୟ,
ପ୍ରଭୁଙ୍କ ଆସନ ଥରେ ।୪୪ ।

ରାତି ତିନିଟାରୁ ମନ୍ଦିର ଖୋଲେ
ନୀତି ହୁଏ ଦରଶନ ସରିଲେ
ପୂର୍ବାହ୍ନ ନୀତିସାତଟା ପୂର୍ବରୁ
ସାହାଣ ମେଲା ଯେ ତହିଁ ଉତାରୁ
ଖରାକୁ ନ ଥାଏ ଧାନ,
ଭକତେ ଧାଡ଼ିରେ, ଯାଆନ୍ତି ମନ୍ଦିରେ,
ଦେଖିବାକୁ ପଞ୍ଚାନନ ।୪୫ ।
ସନ୍ଧ୍ୟା ସାତଟାରେ ଟେରା ହୁଅଇ
ସାଥିରେ ଅନ୍ୟ ନୀତି କରାଯାଇ
ସାହାଣମେଲା ପୁଣି କରାଯାଏ
ଦର୍ଶନ ଚାଲଇ ବାରଟା ଯାଏଁ
ମହାଦୀପ ଉଠି ଗଲେ,
ଭକ୍ତେ ପଣା ସାରି, ଗ୍ରାମେ ଯାନ୍ତି ଫେରି,
ବେଢ଼ାବୁଲା ସରିଗଲେ ।୪୬ ।
ବେଢ଼ା ସରିଲେ ଚାରି ପ୍ରହରରେ
ଚାରି ଅଭିଷେକ ଶତରୁଦ୍ରୀରେ
ପ୍ରତି ଅଭିଷେକ ସରିଲେ ଧୂପ
ଲାଗିହୁଏ ପାଟ ସରିଲେ ଧୂପ
ପ୍ରଭୁଙ୍କ ଏ ଜନ୍ମୋତ୍ସବ,
ରାବଣୋତ୍ପାଟନ, ବେଶେ ତ୍ରିଲୋଚନ,
ଦିଶନ୍ତି ଅତି ଅପୂର୍ବ ।୪୭ ।
ଅଧିଆ ପଡ଼ନ୍ତି ଆସି କେତେକ
ଭକ୍ତ କରି ଯିଏ ଯା ମାନସିକ
କେ କାଟେ ଅଣ୍ଟ କେ ଗଳା କାଟଇ
କିଏ ଜିହ୍ୱା କାଟେ ନିଷ୍ଠାରେ ଥାଇ
ଭକ୍ତି ଚାହିଁ ମିଳେ ଫଳ,
ବେଢ଼ା ବୁଲାକାଳେ, ଉଠନ୍ତି ସକଳେ,
ତପସ୍ୟା ହେଲେ ସଫଳ ।୪୮ ।
ପୁରେଧା ଜାଳିଲେ ଦୀପ ଗୋଟିଏ
ସକାଳେ ଅବକାଶ ନୀତି ହୁଏ
ବଲ୍ଲଭ ପରେ ଲାଗେ ଷୋଳ ଦୀପ
ଠାଆ ଲାଗି ହୁଏ ସକାଳ ଧୂପ
ଦ୍ୱିପହର ଧୂପ ହୋଇ,
ସାହାଣ ମେଲାରେ, ଭକତ ଧାଡ଼ିରେ,
ଯାଆନ୍ତି ଦର୍ଶନ ପାଇଁ ।୪୯ ।

ଟେରା ପରେ ସର୍କାରୀ ନୀତି ହୋଇ
ବର୍ଷରେ ଥରେ କେତକୀ ଲାଗଇ
ବେଢ଼ା ହୁଅଇ ସନ୍ଧ୍ୟା ଧୂପ ପରେ
ନେତ ବନ୍ଧା ହୁଏ ଦେଉଳ ଶିରେ
ମହନରେ ଧୂପ ହୋଇ,
ବନ୍ଦାପନା ହେବ, ଶାଢ଼ୀ ବାହାରିବ,
ପୁଣି ଦର୍ଶନ ହୁଅଇ ।୫୦ ।
ସନ୍ଧ୍ୟାରୁ ଭକତେ ଜାଳନ୍ତି ଦୀପ
ବେଢ଼ା ହୋଇଲେ ଉଠେ ମହାଦୀପ
ଚତୁର୍ଦ୍ଦଶୀ ପର ଦିନକୁ ଥିଲେ
ବେଢ଼ା ଅଧିକ ତିନିଥର ବୁଲେ
ଜାଗର ଉପାସୀମାନେ,
ଉପାସ ତେଜିଣ, ଶିବେ ପ୍ରଣାମିଣ,
ଫେରନ୍ତି ନିଜ ସଦନେ ।୫୧ ।
ଫାଲଗୁନ ଶୁକ୍ଳ ଦଶମୀ ଦିନ
ଫଗୁଲାଗି ହୁଅନ୍ତି ଭଗବାନ
ଫଗୁ ଦଶମୀ ଏହାକୁ କହନ୍ତି
ଚତୁସମେ ପଣ୍ଡା ଲାଗି କରାନ୍ତି
ଫଗୁଲାଗି ମହାଦେବ,
ବିଚିତ୍ର ଠାକୁର, ପରବ ବି ତା'ର,
ଦିଶୁଥାନ୍ତି ଅଭିନବ ।୫୨।
ଫାଲଗୁନ ଶୁକ୍ଳ ଏକାଦଶୀରୁ
ଚତୁର୍ଦ୍ଦଶୀ ତିଥି ଯାଏଁ ମନ୍ଦିରୁ
ଚତୁସମ ପରେ ହୋଇ ବାହାର
ଗ୍ରାମ ପରିକ୍ରମାରେ ଯାନ୍ତି ହର
ଦ୍ୱାରେ ଦ୍ୱାରେ ଭୋଗଖାଇ,
ଚାଚେରୀ ଯାତ୍ରାରେ, ମହା ଉଲ୍ଲାସରେ,
ଫେରନ୍ତି ପାର୍ବତୀ ସାଇଁ ।୫୩।
ଦଧିବାମନ ଜୀଉ ଚାଚେରୀରେ
ବିଜେ ଯିଏ ହରିହରପୁରରେ
ସହଯୋଗୀ ରୂପେ ଆସି ମନ୍ଦିରେ
ଯାଆନ୍ତି ସାଥେ ଚାଚେରୀ ଯାତ୍ରାରେ
ଫେରିଲେ ଦିଅଁ ଉଭୟ,
ମହନ ଭିତରେ, ଧୂପ ହେବା ପରେ,
ହୁଅନ୍ତି ମନ୍ଦିରେ ବିଜୟ ।୫୪ ।

ଟେ'ରା ସରିଲେ ଚତୁର୍ଦ୍ଦଶୀ ଦିନ
ପ୍ରଭୁ କରିଥାନ୍ତି ଗ୍ରାମ ଭ୍ରମଣ
ଦୋଳମଣ୍ଡପେ ଦୋଳ ହୋମ ହୋଇ
ହୋମାଗ୍ନିକୁ ହୁଳା ସାହାଯ୍ୟେ ନେଇ
ଅଗ୍ନ୍ୟୋତ୍ସବ ପଡ଼ିଆରେ,
ଅଗ୍ନି ମହୋତ୍ସବ, ପାଳନ ହୋଇବ,
ପ୍ରଭୁ ଯିବେ ବିମାନରେ ।୫୫ ।
ଫାଲ୍ଗୁନ ପୂର୍ଣ୍ଣିମା ଦୋଳ ପୂର୍ଣ୍ଣିମା
ଯେତେକ ପ୍ରଭୁଙ୍କ ବିଜେ ପ୍ରତିମା
କ୍ଷୀର ଅଭିଷେକ ସରିବା ପରେ
ବାହାରନ୍ତି ବସି ଚଉଧିଳରେ
ଦୋଳବେଦୀକୁ ଯାଆନ୍ତି,
ଶ୍ରୀଦଧିବାମନ, କଲେ ଆଗମନ,
ଭୋଗ ସେଇଠି ଖାଆନ୍ତି ।୫୬ ।
ଧୂପ ସରିଲେ ଶାଢ଼ୀ ବାହାରଇ
ଟେ'ରା ସନ୍ଧ୍ୟା ଧୂପ ପୁଣି ହୁଅଇ
ଜ୍ୟୋତିଷ ନୂଆ ପାଞ୍ଜି ଶୁଣାଇବେ
ପ୍ରଭୁ ଗ୍ରାମ ପରିକ୍ରମା କରିବେ
ଏ ଯାତ୍ରା ଅତି ପବିତ୍ର,
ଶହ ଶହ ଭକ୍ତ, ହୋଇ ସମବେତ,
ନୟନ କରନ୍ତି ପୁତ ।୫୭ ।
ହୋଲି ଚୈତ୍ର କୃଷ୍ଣ ପ୍ରତିପଦାରେ
ହୋଲି ଖେଳିବା ପାଇଁ ବିମାନରେ
ଭିକାରିପଡ଼ା ଗ୍ରାମ ପରିକ୍ରମା
କରନ୍ତି ପ୍ରଭୁଙ୍କ ବିଜେ ପ୍ରତିମା
ଗ୍ରାମର ବାଳକ ଗଣ,
ପ୍ରଭୁଙ୍କ ସାଥିରେ, ମହା ଆନନ୍ଦରେ,
ରଙ୍ଗ ଖେଳନ୍ତି ବିଭିନ୍ନ ।୫୮ ।
ଚଇତ୍ର ମାସର ଶୁକ୍ଳ ଅଷ୍ଟମୀ
ପ୍ରସିଦ୍ଧ ନାମ ତା ଅଶୋକାଷ୍ଟମୀ
ପୂର୍ବୁ ରଥ ଥାଏ ନିର୍ମାଣ ହୋଇ
ରଥ ପ୍ରତିଷ୍ଠାକୁ ବୃଷଭ ଯାଇ
ମହାରଣା ସେବକଟି,
ପ୍ରତିଷ୍ଠା ରଥର, ସୁନ୍ଦର ପ୍ରକାର,
କରେ ଭକ୍ତି ଭରେ ଖଟି ।୫୯ ।

ଚୈତ୍ର ଗୁଣ୍ଡିଚା ଅଶୋକାଷ୍ଟମୀରେ
କ୍ଷୀର ଅଭିଷେକ ସରିବା ପରେ
ପଣ୍ଡାଙ୍କ ହାତରେ ପହଣ୍ଡି ହୋଇ
ଶ୍ରୀଚନ୍ଦ୍ରଶେଖର ରଥକୁ ଯାଇ
ବସନ୍ତି ରଥ ଉପରେ,
ରଥ ପରେ ଶିବ, ଦିଶନ୍ତି ଅପୂର୍ବ,
ଭକତେ ଖୁସି ମନରେ ।୬୦ ।
ଛେରା ପହରା ହୁଅଇ ରଥର
ପରିଚ୍ଛା ପ୍ରତିନିଧି ରାଜାଙ୍କର
ସହର୍ଷେ ଏହି କାର୍ଯ୍ୟ କରିଥାନ୍ତି
ତାପରେ ହୁଏ ବନ୍ଦାପନା ନୀତି,
ଧୂପ ହୁଏ ରଥ ପରେ,
ଶାଢ଼ୀ ବାହାରଇ, ରଥ ଟଣା ହୋଇ,
ଯାଅଇ ଗୁଣ୍ଡିଚା ଘରେ ।୬୧
ଅଶୋକାଷ୍ଟମୀର ତୃତୀୟ ଦିନ
ଠାକୁରାଣୀ ଚଢ଼ି ନିଜ ବାହନ
ପୂର୍ବ ଦ୍ୱାର ଦେଇ ଗୁଣ୍ଡିଚା ଘରେ
ଯାଆନ୍ତି ପାର୍ବତୀ ହେରା ଯାତ୍ରାରେ
ଆଳତୀ ହୁଏ ସେଠାରେ,
ସମସ୍ତ ଭକତ, ହୋଇଣ ଏକତ୍ର,
ଦେଖନ୍ତି ଯାତ୍ରା ନେତ୍ରରେ ।୬୨ ।
ଚଇତ୍ର ଶୁକ୍ଳ ନବମୀ ତିଥିରେ
ରାମ ଜନ୍ମୋତ୍ସବ ହୁଏ ମନ୍ଦିରେ
ନବ ଦିନ ବ୍ୟାପି ପ୍ରତି ରାତିରେ
ରଘୁନାଥ ମହାପ୍ରଭୁଙ୍କ ଠାରେ
ଅଧିକ ଭୋଗ ହୁଅଇ,
ରାମ ଭକ୍ତମାନେ, ଖୁସି ହୁନ୍ତି ମନେ,
ପରବରେ ଭାଗ ନେଇ ।୬୩ ।
ଚଇତ୍ରର ଶୁକ୍ଳ ପ୍ରତିପଦାରେ
ଚତୁସମ ପରେ ମାଆଙ୍କ ଠାରେ
ନବ ପତ୍ରିକା ଧୂପ ଯେ ହୁଅଇ
ନବମୀ ତିଥି ପର୍ଯ୍ୟନ୍ତ ଚାଲଇ
ମାତା ଜଗତ ଜନନୀ,
ସିଏ ଭଗବତୀ, ସିଏ ମା ପାର୍ବତୀ,
ଭକତ ପାପନାଶିନୀ ।୬୪ ।

ଚଇତ୍ରର ଶୁକ୍ଳ ଦ୍ୱାଦଶୀ ଦିନ
ବାହୁଡ଼ା ଯାତ୍ରା ହୁଅଇ ପାଳନ
ଚନ୍ଦ୍ରଶେଖର ଆସି ସିଂହଦ୍ୱାରେ
ଭେଟନ୍ତି ତାଙ୍କୁ ପାର୍ବତୀ ସେଠାରେ
ଦୁହେଁ ଭିତରକୁ ଯିବେ,
ନାଟମଣ୍ଡପରେ, ଅଭିମାନ ଭରେ,
ମାତା କବାଟ କିଳିବେ ।୬୫ ।

ଠାକୁର ଓ ଠାକୁରାଣୀ ପକ୍ଷରୁ
ଜଣେ ଜଣେ ସେବକଙ୍କ ଭିତରୁ
ଅଭିନୟ କରି ଗାଇବେ ଗୀତ
କବାଟ ଫିଟା ଗୀତ ସେ ପବିତ୍ର
ଅଭିମାନ ଭଙ୍ଗ ପରେ,
ନାଟ ମଣ୍ଡପେଣ, ଆଳତୀ ହୋଇଣ,
ଫେରିବେ ସିଂହାସନରେ ।୬୬ ।

ଚଇତ୍ର ମାସ ଶୁକ୍ଳ ଚତୁର୍ଦ୍ଦଶୀ
ନାମଟି ଦମନକ ଚତୁର୍ଦ୍ଦଶୀ
ଟେରା ନୀତି ହୋଇ ବେଢ଼ା ହୋଇବ
ତାପରେ ଚତୁର୍ଦ୍ଦଶୀ ନୀତି ହେବ
ବନ୍ଦାପନା ନୀତି ହୋଇ,
ସଂନ୍ଧ୍ୟା ଧୂପ ପରେ, ଠାକୁରଙ୍କ ଠାରେ,
ଅନ୍ୟାନ୍ୟ ନୀତି ହୁଅଇ ।୬୭ ।

ବୈଶାଖ ଶୁକ୍ଳ ଦ୍ୱିତୀୟା ତିଥିରେ
କ୍ଷୀର ଅଭିଷେକ ସରିବା ପରେ
ଠାକୁର ଠାକୁରାଣୀ ବେଶ ହୋଇ
ବସନ୍ତି ସୁବାସ ଭୋଗ ହୁଅଇ
ଥାଇ ବଡ଼ ପଣ୍ଡା ହସ୍ତେ,
ଆଳତୀ ହୁଅଇ, ବେଢ଼ା ବୁଲା ହୋଇ,
ଯାଆନ୍ତି ଚନ୍ଦନ ଯାତେ ।୬୮ ।

ବୁଲିଣ ଗୋଟିଏ ଘେରା ନୌକାରେ
ଧୂପ ହୁଏ ଗଲେ ଚନ୍ଦନ ଘରେ
ଚନ୍ଦନ ପାଣିରେ ବୁଡି ରହିବେ
ସଂନ୍ଧ୍ୟାରେ ପଣ୍ଡାଏ ବେଶ କରିବେ
ଭୋଗ ସେଠି ଲାଗି ହେବ,
ସଂନ୍ଧ୍ୟା ଧୂପ ପରେ, ଚତୁସମ ପରେ,
ନଉକା ସେବା ହୋଇବ ।୬୯ ।

ସରରେ ଚାପ ବୁଲେ ତିନି ଘେରା
ଡଙ୍ଗାରେ ପ୍ରଭୁଙ୍କ ଯାତ୍ରା ନିଆରା
ଓହ୍ଲେଇ ଗାଁ ପରିକ୍ରମାରେ ଯିବେ
ଚାଳିମଣ୍ଡପରେ ଭୋଗ ଖାଇବେ
ଅକ୍ଷୟ ତୃତୀୟା ଠାରୁ,
ଚନ୍ଦନ ଯାତ୍ରାଏ, ବିଂଶ ଦିନ ଯାଏଁ,
ଚାଲେ ପ୍ରଭୁଙ୍କ କୃପାରୁ ।୭୦ ।

ଏକବିଂଶ ଦିନ ନାମ ଭଉଁରୀ
ବାବା ବାବା ବୋଲି ପଡ଼ଇ ହୁରି
ଏକୋଇଶ ଘେରା ଚାପ ବୁଲଇ
ବାଣ ବାଜା ଢୋଲ କେତେ ବାଜଇ
ପ୍ରଭୁ ଶ୍ରୀ ଦଧିବାମନ,
ଆସିଣ ଚାପରେ, ପ୍ରଭୁଙ୍କ ସାଥିରେ,
ଯୋଗ ଦ୍ୟନ୍ତି ଏହି ଦିନ ।୭୧ ।

ଚନ୍ଦନ ମଧ୍ୟେ ଚତୁର୍ଦ୍ଦଶୀ ହେଲେ
ବେଢ଼ା ହୁଏ ଚନ୍ଦନରୁ ଫେରିଲେ
ଭଉଁରୀ ବାସୀ ଦ୍ୱାବିଂଶ ଦିନ ସେ
ଘେରାଏ ଚାପ ବୁଲଇ ହରଷେ
ହୁଏ ଗ୍ରାମ ପରିକ୍ରମା,
ଭକତ ସେବକ, ଖୁସି ବି ଦର୍ଶକ,
ନିରାଶା ନଥାଏ ଜମା ।୭୨ ।

ପରଦିନ ଠାରୁ ପୂର୍ଣ୍ଣମୀ ଯାଏଁ
ଭିତର ଚନ୍ଦନ ମନ୍ଦିରେ ହୁଏ
ମନ୍ଦିରେ ଚନ୍ଦନ କୁଣ୍ଡ ଭିତରେ
ଚଳନ୍ତି ପ୍ରତିମା ଥାନ୍ତି ଜଳରେ
ଟେରା ନୀତିର ପୂର୍ବରୁ,
ସୁବେଶ ହୁଅନ୍ତି, ପଣା ଭୋଗ ଖାନ୍ତି,
ବାହାରି କୁଣ୍ଡ ଭିତରୁ ।୭୩ ।

ପଣାସଂକ୍ରାନ୍ତିର ଯାତ୍ରା ସ୍ୱତନ୍ତ୍ର
ଭକତଙ୍କୁ ଟାଣଇ କରି ମନ୍ତ୍ର
କ୍ଷୀର ଅଭିଷେକ ସରିବା ପରେ
ପାଟ ବୃଷଭଙ୍କ ଅତି ପାଖରେ
ମାଠିଆ ସାତଟି ଆଣି,
ରନ୍ଧ୍ର ଓ ସଂସ୍କାର, କରି ବରାବର,
ଭରନ୍ତି ତହିଁରେ ପାଣି ।୭୪ ।

ଛତା ଉତ୍ସର୍ଗ ନୀତି ତାହା ପରେ
ବସୁଧରା ବସେ ଚଉରା ଠାରେ
ଦେବସ୍ନାନ ପୂର୍ଣ୍ଣମୀ ଯାଏଁ ଥାଏ
ପଣାଠାରୁ ବୃଷ ସଂକ୍ରାନ୍ତି ଯାଏଁ
କ୍ଷୀର ଅଭିଷେକ ପରେ,
ହୁଏ ପଣା ଭୋଗ, ଥିଲେ ଭକ୍ତ ଭାଗ୍ୟ,
ମିଳେ ପ୍ରସାଦ ରୂପରେ ।୭୫ ।

ଜ୍ୟେଷ୍ଠ ଅମାବାସ୍ୟା ସାବିତ୍ରୀ ବ୍ରତ
ମହିଳାଏ ହୋଇ ପୁତ ପବିତ୍ର
ନିଜ ପତିଙ୍କର ଶୁଭ ମନାସୀ
ଠାକୁରାଣୀଙ୍କର ମନ୍ଦିରେ ଆସି
ପୂଜନ୍ତି ବସ୍ତ୍ର ସିନ୍ଦୁର,
ଫଳ ଧୂଆମୁଗ, କରାଯାଏ ଭୋଗ,
ପାଶେ ପାର୍ବତୀ ମାଆର ।୭୬ ।

ଜ୍ୟେଷ୍ଠ ମାସ ଶୁକ୍ଳଚତୁର୍ଥୀ ଦିନ
ଲଡ୍ଡୁବାବାଙ୍କର ହୁଏ ମର୍ଦ୍ଦନ
ରୋଷଘରେ ମର୍ଦ୍ଦନ ହାଣ୍ଡି ବସେ
ଚତୁସମରେ ନିମନ୍ତ୍ରଣ ଆସେ
ମନ୍ଦିରୁ ପାର୍ବତୀଙ୍କର,
କ୍ଷୀର ପିଠା ପୂଜା, ଭୋଗ ଭାରିମଜା,
ଆନନ୍ଦ ଲଡ୍ଡୁକେଶ୍ୱର ।୭୭ ।

ଜ୍ୟେଷ୍ଠ ମାସ ଶୁକ୍ଳ ପଞ୍ଚମୀ ଦିନ
ବୃଷଭ ପରେ କରି ଆରୋହଣ
ଟେରା ଫିଟା ପରେ ଚନ୍ଦ୍ରଶେଖର
ଆଳତୀ ହୋଇ ପୂର୍ବ ଦ୍ୱାରଠାର
ସିଧା ବିଭା ମଣ୍ଡପକୁ,
ଭିକାରିପଡ଼ାରେ, ମନ ଉଲ୍ଲାସରେ,
ବେଠିଆ ନ୍ୟନ୍ତି ପ୍ରଭୁଙ୍କୁ ।୭୮ ।

ଘଣ୍ଟ ନ ବଜାଇ ବିନା ଶବ୍ଦରେ
ଚନ୍ଦ୍ରଶେଖର ଯାଆନ୍ତି ଆଗରେ
ଯାଇ ଗୋପୀନାଥ ଚାଳିମଣ୍ଡପେ
ସେଠି ହୁଅନ୍ତି ଆପ୍ୟାୟିତ ଧୂପେ
ଭିକାରୀପଡ଼ା ଯାଆନ୍ତି,
ଭୋଗଖାଇ ଦ୍ୱାରେ, ଫେରିଲେ ମନ୍ଦିରେ,
ଉମାଙ୍କୁ ବାହା ହୁଅନ୍ତି ।୭୯ ।

ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ ଶୀତଳଷଷ୍ଠୀ
ସବୁ ଦିଆଁ ଆସି ହୁଅନ୍ତି ଏକାଠି
ମହନ ଭିତରେ ଧୂପ ହୋଇବ
ଧୂପ ସରିଲେ ଶାଢୀ ବାହାରିବ
ଆଳତୀ ପୂର୍ବ ଦୁଆରେ,
ଥାଟ ବାଟ ସହ, ଦେବତାସମୂହ,
ଯାଇ ବସନ୍ତି ଭାଡ଼ିରେ ।୮୦।
ହରିହରପୁର ଦଧିବାମନ
ପଟୁଆରରେ ପାଇ ନିମନ୍ତ୍ରଣ
ଆସନ୍ତି ଏଥେ ବରଯାତ୍ରୀ ହୋଇ
ସାଜସଜ୍ଜା ତାଙ୍କ ମନ ମୋହଇ
ମେଳନ ପଡ଼ିଆ ଯାଇ,
ବାଣରୋଷଣୀରେ, ନୃତ୍ୟ ଓ ଗୀତରେ,
ଭକତ ମନ ନାଚଇ ।୮୧।
ପରଦିନ ସକାଳ ଅବକାଶ
ମନ୍ଦିର ଚାଳିରେ ହୁଏ ସହର୍ଷ
ତିନିବାଡ଼ ପାଇଁ ଅଲଗା ଭୋଗ
ଚାଳିମଣ୍ଡପରେ ହୁଅଇ ବାଗ
ଭକତଙ୍କ ଭିଡ଼ ହୁଏ,
ଧୂପ ହେବା ପରେ, ସମୂହ ଭାବରେ,
ଗ୍ରାମ ପରିକ୍ରମା ହୁଏ ।୮୨।
ଶିବ ପାରବତୀ ଧରି କୁଣିଆ
ଯାଆନ୍ତି ଶୀତଳଷଷ୍ଠୀ ପଡିଆ
ଫେରନ୍ତି ସର୍ବେ ଦ୍ୱାର ଭୋଗ ଖାଇ
ମହନରେ ମାଘସ୍ନାନ ହୁଅଇ
ପଡ଼େ ଆଲଟ ଚାମର,
ଧୂପ ହେବା ପରେ, ଯେଝା ବିମାନରେ,
ଅତିଥି ଯାଆନ୍ତି ଘର ।୮୩।
ଶିବବିବାହର ଚାରି ଦିନରେ
ଚତୁର୍ଥୀ ହୁଏ ମହନ ଭିତରେ
ଟେରା ପରେ ଗୋପୀନାଥ ଠାକୁରେ
ବିଭା ମଣ୍ଡପକୁ ବିନା ଘଣ୍ଟରେ
ପ୍ରଥମେ ଯାଇଥାଆନ୍ତି,
ତାଙ୍କ ପଛେ ପରେ, ଅନ୍ୟାନ୍ୟ ଠାକୁରେ,
ଯାଇ ସେଠି ପହଞ୍ଚନ୍ତି ।୮୪।

ବୃଷଭ ପରେ ଉମା ମହେଶ୍ୱର
ବିମାନେ ପାର୍ବତୀ ଚନ୍ଦ୍ରଶେଖର
ପୂର୍ବ ଦ୍ୱାର ଠାରେ ଆଳତୀ ହୋଇ
ଯାଆନ୍ତି ଦୁହେଁ ଚାଳୀ ଭୋଗ ଖାଇ
ଭିକାରୀପଡ଼ା ଯାଆନ୍ତି,
ସେଠି ଭୋଗ ଖାଇ, ସର୍ବେ ସାଥି ହୋଇ,
ମନ୍ଦିରରେ ପହଞ୍ଚନ୍ତି ।୮୫ ।

ଶିବ ବିବାହର ସାତ ଦିନରେ
ସାତ ମଙ୍ଗଳା ହୁଏ ମନ୍ଦିରରେ
ଟେରା ପରେ ଉମା ଚନ୍ଦ୍ରଶେଖର
ଯାଆନ୍ତି ବାଉଁଶିଆ ଶାସନର
ଫେରିଲେ ପ୍ରଭୁ ବିମାନ,
ସନ୍ଧ୍ୟା ଧୂପ ହୁଏ, ପୁଣ୍ୟ ଯେ କୋଟିଏ,
ମିଳଇ କଲେ ଦର୍ଶନ ।୮୬ ।

ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ତିଥିରେ
ରୁକ୍ମିଣୀ ବିବାହ ହୁଏ ମନ୍ଦିରେ
ଲକ୍ଷ୍ମୀ ଗୋପୀନାଥ ବେଶ ହୋଇଣ
ଯାଆନ୍ତି ଜଗନ୍ନାଥଙ୍କ ସଦନ
ବିବାହ ହୁଏ ସମ୍ପର୍ଣ୍ଣ,
ଭାଗ୍ୟ ଭଲ ଥିଲେ, ପ୍ରଭୁ କୃପା କଲେ,
ଉତ୍ସବ ହୁଏ ଦର୍ଶନ ।୮୭ ।

ରଜ ସଂକ୍ରାନ୍ତି ପୂର୍ବ ପର ଦିନ
ମହାଲକ୍ଷ୍ମୀ ଛାଡ଼ିଣ ସିଂହାସନ
ତଳେ ଆଡ଼ ହୋଇକାଠ ପ୍ରଭାରେ
ବସନ୍ତି ମାତା ଅଲଗା ଭାବରେ
ଭୋଗ ଫଳ ମୂଳ ହୁଏ,
ଅଁଳା ହଳଦୀରେ, ସ୍ନାନ କଲା ପରେ,
ମହନରେ ଧୂପ ହୁଏ ।୮୮ ।

ଆଷାଢ଼ ଶୁକ୍ଳ ଅଷ୍ଟମୀ ତିଥିରେ
କ୍ଷୀର ଅଭିଷେକ ପରେ ମନ୍ଦିରେ
ନୀତି ହୋଇ ବନ୍ଦାପନା ହୁଅଇ
ତାପରେ ମଧାହ୍ନ ଧୂପ ଉଠଇ
ଅଷ୍ଟମୀ ପରଶୁରାମ,
ମହାପୁଣ୍ୟଦାୟୀ, ବିଜୟ ପ୍ରଦାୟୀ,
ଯାଇଣ କର ପ୍ରଣାମ ।୮୯ ।

ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ ଦିନ
ଏ ଚତୁର୍ଦ୍ଦଶୀର ନାମ ଶୟନ
ଟେରା ପରେ ବେଢ଼ା, ତାପରେ ଧୂପ
ବନ୍ଦାପନା ଧୂପ ଓ ସନ୍ଧ୍ୟା ଧୂପ
ହୁଏ ଏକ ପରେ ଏକ,
ଅତ୍ୟନ୍ତ ପବିତ୍ର, ଏହି ଦିନଟି ତ,
ଦେଖନ୍ତି ଭକତ ଲୋକ ।୯୦ ।
ଜ୍ୟେଷ୍ଠ ପୂର୍ଣ୍ଣିମାଟି ସ୍ନାନ ପୂର୍ଣ୍ଣିମା
ଜଗା ବଳଭଦ୍ର ସୁଭଦ୍ରା ମାଆ
ସ୍ନାନ ମଣ୍ଡପକୁ ପହଣ୍ଡି ହୋଇ
ତହିଁ ମିଳନ୍ତି ଗୋପୀନାଥ ଯାଇ
ଚନ୍ଦନ କର୍ପୁର ଜଳେ,
ସ୍ନାନ କରାଯାଏ, ବଲ୍ଲଭ ବି ହୁଏ,
ଦେଖନ୍ତି ଭକ୍ତ ସକଳେ ।୯ ୧ ।
ଭୋଗ ପରେ ଅଣସର ଘରକୁ
ଯାନ୍ତି ଭୋଗ ଲାଗେ ପଟି ଦିଅଁଙ୍କୁ
ଚତୁର୍ଦ୍ଦଶୀ ଯାଏଁ ଚାଲେ ଏପରି
ଅମାବାସ୍ୟା ଦିନ ପଟି ବାହାରି
ଚକା ଲାଗି ପ୍ରଭୁ ହେବେ,
ଅଣସର ନୀତି, ସରଇ ଏମିତି,
ଏକା ନୀତି ବ୍ରହ୍ମ ଜୀବେ ।୯ ୨ ।
ପ୍ରତିପଦା ଦିନ ନେତ୍ର ଉତ୍ସବ
ପ୍ରଭୁଙ୍କ ଆଖି ଫିଟା ନୀତି ହେବ
ନବବସ୍ତ୍ର ପ୍ରଭୁ ଲାଗି ହୁଅନ୍ତି
ପଣା, ଖଇ,ଭୋଗ ସବୁ ଖାଆନ୍ତି
ଅବକାଶ ଧୂପ ହେବ,
ଘଣ୍ଟ ବି ବାଜିବ, କାହାଳୀ ବାଜିବ,
ରୂପ ଦିଶେ ଅଭିନବ ।୯୩ ।
ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟାରେ
ରଥଯାତ୍ରା ହୁଅଇ ଗୁଣ୍ଡିଚାରେ
ଅବକାଶ ବଲ୍ଲଭ ଧୂପ ପରେ
ଛେଣା ପଟା ଲାଗେ ପ୍ରଭୁ ଶରୀରେ
ପହଣ୍ଡି ପରେ ହୁଅନ୍ତି,
ତିନି ରଥେ ତିନି, ଦେବତାଙ୍କୁ ଘେନି,
ଗୁଣ୍ଡିଚା ଘରେ ଯାଆନ୍ତି ।୯ ୪ ।

ରଥ ହୁଅଇ ତିନି ଭିନ୍ନ ଭିନ୍ନ
ମହାରଣାମାନେ ଲଗାଇ ମନ
ଗଢ଼ନ୍ତି ରଥ ସାରଥି ଓ ଅଶ୍ୱ
ଦେବଦେବୀ ଚିତ୍ରେ ସଜାନ୍ତି ପାର୍ଶ୍ୱ
ବିଭିନ୍ନ ଗ୍ରାମୁ ଆସନ୍ତି,
କୌଶଳ ଲଗାଇ, ଅଭିଜ୍ଞତା ଦେଇ,
ପାରିଶ୍ରମିକ ପାଆନ୍ତି ।୯୫।
ସୁଭଦ୍ରାଙ୍କ ରଥରେ ସୁଦର୍ଶନ
ରଥରେ ପ୍ରଭୁଏ ବେଶ ହୋଇଣ
ପରିଚ୍ଛା କରନ୍ତି ଛେରା ପହରା
ବହୁ ପୁଣ୍ୟଦାୟୀ ରଥ ଯାତରା
ରଥେ ଦେଖିଲେ ବାମନ,
ମୁକତି ମିଳଇ, ପାପ ନାଶ ଯାଇ,
କଟଇ ସବୁ ବନ୍ଧନ ।୯୬।
ଆଖ ପାଖ ଗ୍ରାମୁ ଭକତ ଗଣ
ଆସିଥାନ୍ତି କରିବାକୁ ଦର୍ଶନ
ଲୋକାରଣ୍ୟ ହୁଏ ଶରଣକୁଳ
ମିଳେ ମନୋହରି ବସ୍ତୁ ସକଳ
ମକା ମୁଆଁଟି ପ୍ରସିଦ୍ଧ,
ପିଲାଙ୍କର ମନ, ହୁଅଇ ପ୍ରସନ୍ନ,
ବୟସ୍କ ହୃଦୟ ମୁଗ୍ଧ । ୯୭ ।
ପିଲା, ବୁଢ଼ା, ଟୋକା ଉତ୍ସାହ ଭରେ
ଟାଣନ୍ତି ରଥକୁ ଶ୍ରଦ୍ଧା ଭକ୍ତିରେ
ତାଳଧ୍ୱଜ ଟଣା ହୁଏ ପ୍ରଥମେ
ଦେବଦଳନ ତାହା ପରେ ଗମେ
ଶେଷେ ନନ୍ଦିଘୋଷ ରଥ,
ହରିବୋଲ ଶବ୍ଦ, ବାଜେ ଘଣ୍ଟବାଦ୍ୟ,
ଏକ ହୁଏ ରଥ ପଥ ।୯୮ ।
ରଥ ଯାଇ ଲାଗେ ଗୁଣ୍ଡିଚା ଘରେ
ପୋଲିସ ଦୃଷ୍ଟି ଥାଏ ଶୃଙ୍ଖଳାରେ
ରଥ ଟାଣିବାକୁ ଦଉଡ଼ି ଧରି
ଦଉଡ଼ି ଭକ୍ତେ ଯାନ୍ତି ଶ୍ରମ କରି
ଅହୋଭାଗ୍ୟ ଯେ ମଣନ୍ତି,
ପତିତ ଉଦ୍ଧାରେ, ସାରା ଜଗତରେ,
ଜଗା ପରି କେ ନାହାଁନ୍ତି ।୯୯ ।

ଆଷାଢ଼ ଶୁକ୍ଳ ନବମୀ ତିଥିରେ
ଟେରା ଫିଟା ନୀତି ହୋଇବା ପରେ
ଆଡ଼ପ ମଣ୍ଡପେ ହୁଏ ଦର୍ଶନ
ଜଗନ୍ନାଥ ପ୍ରଭୁ ଜଗଜୀବନ
ଦେଖିଲେ ଆଖି ପବିତ୍ର,
ନୀଳାଦ୍ରି ବିହାରୀ, ଶଙ୍ଖଚକ୍ର ଧାରୀ,
ଆନନ୍ଦେ ନାଚେ ଭକତ ।୧୦୦।
ଆଷାଢ଼ ମାସ ଶୁକ୍ଳ ଦଶମୀରେ
ବାହୁଡ଼ା ଯାତ୍ରା ଯାକ ଯମକରେ
ଭାଇ ଭଗ୍ନୀ ଘେନି ଶ୍ରୀଜଗନ୍ନାଥ
ଫେରନ୍ତି ମନ୍ଦିରେ ଚଢ଼ିଣ ରଥ
ଏକାଦଶୀ ରଥ ପରେ,
କରନ୍ତି ଦର୍ଶନ, ଭକତ ସୁଜ୍ଞାନ,
ଯାଇ ମହା ଆନନ୍ଦରେ ।୧୦୧।
ସକାଳୁ ସକାଳୁ ଦ୍ୱାଦଶୀ ଦିନ
ମହାଲକ୍ଷ୍ମୀ ଯାନ୍ତି ଚଢ଼ି ବିମାନ
ରଥ ପାଶେ ତାଙ୍କୁ ହୁଏ ଆଳତୀ
ଫେରି ପ୍ରଭୁଙ୍କ ମହନେ ବସନ୍ତି
ପହଣ୍ଡି ହୁଏ ତାପରେ,
ପହଣ୍ଡି ବେଳର, ଦୃଶ୍ୟ ଚମତ୍କାର,
ଭକତ ମନକୁ ହରେ ।୧୦୨।
ସୁଭଦ୍ରା ମାତା ଓ ବଡ଼ଠାକୁର
ନିର୍ବିଘ୍ନେ ଯାନ୍ତି ମନ୍ଦିର ଭିତର
ଜଗନ୍ନାଥଙ୍କୁ ଦାସୀଏ ଜଗନ୍ତି
ଲକ୍ଷ୍ମୀ ନାରାୟଣ କଳି ଲାଗନ୍ତି
ପାଇ କରି ଉପହାର,
ଲକ୍ଷ୍ମୀ ନାରାୟଣ, ଭେଟ ହୁଏ ପୁଣ,
ତୁଟି ଯାଏ ମନାନ୍ତର ।୧୦୩।
ସିଂହାସନରେ ଚତୁର୍ଦ୍ଧା ମୂରତି
ବସିଣ ଦିଶନ୍ତି ସୁନ୍ଦର ଅତି
ପତିତ ପାବନ ଅର୍ଥେ ବାହାର
ପତିତପାବନ ନାମ ତାଙ୍କର
ଜଗତ ଉଦ୍ଧାର ପାଇଁ,
ଦାରୁବ୍ରହ୍ମ ରୂପେ, ବିଚିତ୍ର ସ୍ୱରୂପେ,
ବିଜୟ କରି ଅଛଇଁ ।୧୦୪।

ବୈଶାଖ ମାସ ଶେଷ ସୋମବାର
ସରନ୍ତି ସୋମବାର ନାମ ତାର
ନୟାଗଡ଼ ରାଜ୍ୟ ଷୋଳ ଶାସନ
ବତିଶ କର ବାଡ଼ର ବ୍ରାହ୍ମଣ
ବେଢ଼ାରେ ଆସି ମିଳନ୍ତି,
ପ୍ରଭୁ ଚରଣରେ, ଭକତି ଭାବରେ,
ଶୁଦ୍ଧ ମନେ ପ୍ରଣମନ୍ତି ।୧୦୫ ।
ନାନା ନିସଙ୍କୁଡ଼ି ଭୋଗ ପ୍ରସ୍ତୁତ
ବେଢ଼ା ମଧ୍ୟେ ହୋଇଣ ସମବେତ
କରନ୍ତି ପୃଥକ ପୃଥକ ଭାବେ
ଅର୍ପଣ କରନ୍ତି ନେଇଣ ଶିବେ
ଚନ୍ଦନ ଯାତ୍ରା କାଳରେ,
ବ୍ରାହ୍ମଣେ ଶେଷରେ, ବସିଣ ବେଢ଼ାରେ,
ସେବନ କରନ୍ତି ତାରେ ।୧୦୬ ।
ଶ୍ରାବଣ ଶୁକ୍ଳ ଏକାଦଶୀ ଦିନ
ଆରମ୍ଭ ହୁଅଇ ଯାତ୍ରା ଝୁଲଣ
ପୂର୍ଣ୍ଣିମା ପର୍ଯ୍ୟନ୍ତ ଏ ଯାତ୍ରା ଚାଲେ
ମଦନ ମୋହନ ମଣ୍ଡପେ ଗଲେ
ବସନ୍ତି ଯାଇ ଦୋଳିରେ,
ଭକତେ ଝୁଲାନ୍ତି, ଆନନ୍ଦ ଘେନନ୍ତି,
ବିଭୋର ପ୍ରଭୁ ସାଥିରେ ।୧୦୭ ।
ଧନୁ ସଂକ୍ରାନ୍ତିରୁ ମକର ଯାଏଁ
ମନ୍ଦିରରେ ପହିଲି ଭୋଗ ହୁଏ
ସକାଳ ଧୂପରେ ହୁଅଇ ଯାହା
ସାତଟା ପୂର୍ବୁ ପୂଜା ହୁଏ ତାହା
କାନିକା ଖେଚେଡ଼ି ଖିରି,
ବିଭିନ୍ନ ବ୍ୟଞ୍ଜନ, ହୁଏ ସମର୍ପଣ,
ଡାଲି ଖଟା ତରକାରୀ ।୧୦୮ ।
ଅତି ପବିତ୍ର ଏକଥା ପ୍ରଭୁର
ଶୁଣେ ପଢ଼େ ଭାବେ ଯିଏ ମନର
ତାହାର ସବୁ ପାପ ଛାଡ଼ି ଯାଏ
ଗ୍ରହ ଦୋଷ ଯେତେକ ନଷ୍ଟ ହୁଏ
ପ୍ରଭୁ ହୁଅନ୍ତି ପ୍ରସନ୍ନ,
ପର୍ବେ ନେଲେ ଭାଗ, କଟଇ ଦୁର୍ଭାଗ୍ୟ,
ମିଳେ ବିଭିନ୍ନ ସମ୍ମାନ ।୧୦୯ ।

ମଦ୍ୟପାନ କିମ୍ବା ବୃକ୍ଷ ଛେଦନ
କୂପ ତଡ଼ାଗ କରେ ପ୍ରଦୁଷଣ
ପର ଦ୍ରବ୍ୟ ପର ଖାଦ୍ୟ ଯେ ହରେ
ପର ଧନେ ପରନାରୀ ଉପରେ
ଦୃଷ୍ଟି ପକାଏ ଯେ ବ୍ୟକ୍ତି
ଦେଖିଲେ ପରବ, ପ୍ରଭୁ ସଦାଶିବ,
ପାପକୁ ତାର ଦହନ୍ତି ।୧୧୦।

ପର୍ବମାନଙ୍କରେ ଲୀଳା ପ୍ରଭୁର
ନାଶଇ ତିନି ଶୂଳ ସଂସାରର
ଜୀବିତରେ ସଉଭାଗ୍ୟ ଦିଅଇ
ଅନ୍ତେ ଶିବଗଣେ ସ୍ଥାନ ମିଳଇ
ଭାଗ ନିଏ ଯେ ଲୀଳାରେ,
ପାର୍ବତିଙ୍କ ପତି, କଇଳାସ ପତି,
ତା ପ୍ରତି କରୁଣା କରେ ।୧୧୧।

କହିଲି ସବୁ ଯାତ୍ରା ବିବରଣ
ଠିକେ ଠିକେରେ କରିଲି ବର୍ଣ୍ଣନ
ଶୁଣ ହେ ଭକତେ ମନକୁ ଦେଇ
ଦୋଷାଦୋଷ ମୋର ଧରିବ ନାହିଁ
ପ୍ରଭୁଙ୍କର କରୁଣାରୁ,
ଯାହା ସେ କହିଛି, ତାହା ମୁଁ ବର୍ଣ୍ଣିଛି,
ତା'ର ଦୟା ହୋଇବାରୁ ।୧୧୨।





# ଚତୁର୍ଦ୍ଦଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରରେ ଯାତ୍ରାଙ୍ଗୀ ଦିବସ ମାନଙ୍କର
ତିଥି ଓ ନୀତି ବର୍ଣ୍ଣନ)

ଏବେ କହୁଅଛି ଯାତ୍ରାଙ୍ଗୀ କଥା
ଶୁଣି ଦୂର ହେବ ମନର ବ୍ୟଥା
ଏହା ଅଟଇ ଏକ ଶିବବ୍ରତ
ଭକ୍ତେ ପାଳନ୍ତି ନିଷ୍ଠାର ସହିତ
ବର୍ଷରେ ଚଉଦ ପାଳି,
ଉପାସ ରହିଣ, ସହିଣ କଷଣ,
ଭକ୍ତ ଥାଏ ବ୍ରତ ପାଳି ।୧ ।
ପ୍ରଥମାଷ୍ଟମୀରୁ ଆରମ୍ଭ ହୋଇ
ବିଧିରେ ବରଷେ କାଳ ଲାଗଇ
ବ୍ରତ ଧରା ହୁଏ ମାନସିକରେ
ଚଉଦ ପାଳି ବା ଚୌଦ ବର୍ଷରେ
ଛଡ଼ା ହୁଏଏହି ବ୍ରତ,
ମାନସିକ ପୂର୍ଣ୍ଣ, କରନ୍ତି ଈଶାନ,
ତୋଷ ହୁଅଇ ଭକତ ।୨ ।
ମନ୍ଦିରରେ ହୁଏ ସ୍ୱତନ୍ତ୍ର ନୀତି
ନୀତି ମନ୍ଦିର ପୁରୋଧା କରନ୍ତି
ଶୈବ କଳ୍ପଦ୍ରୁମ ଗ୍ରନ୍ଥାନୁସାରେ
ଏହି ନୀତି ହୋଇଥାଏ ବିଧିରେ
ପ୍ରଭୁଙ୍କର ପ୍ରୀତି ପାଇଁ,
ଅତୀବ ନିଷ୍ଠାରେ, ଅତି ବିଶ୍ୱାସରେ,
ଆତୁରେ ଭକ୍ତ ଡାକଇ ।୩ ।
ଗଙ୍ଗା ଉଦକରେ ପ୍ରଭୁଙ୍କୁ ସ୍ନାନ
ଅଗୁରୁ ସହିତ ରକ୍ତ ଚନ୍ଦନ
ବସ୍ତ୍ର ଓ ଚନ୍ଦନ ଆଉ କର୍ପୂର
ଲାଗି କରାଯାଏ ପ୍ରଭୁ ପୟର
ଖଟଣି ଭୋଗ ହୁଅଇ,
ହଳଦୀ ଅକ୍ଷତ, କରିଣ ମିଶ୍ରିତ,
ବନ୍ଦାପନା ହୋଇ ଥାଇ ।୪ ।

ବନ୍ଦାପନା ପ୍ରଭୁଙ୍କୁ ବନ୍ଦା ହୁଏ
ବନ୍ଦାପନା ସରିଲେ ନୀତିହୁଏ
ଉପବାସିଆ ବନ୍ଦାପନା ସାରି
ଫଳମୂଳାଦି କିଛି ଭୋଗ କରି
ପ୍ରସାଦ ରୂପେ ପାଆନ୍ତି,
ନିଷ୍ଠାରୁ ତାଙ୍କର, ଜାଣନ୍ତି ଶଙ୍କର,
କେତେ ଭକ୍ତି କେ କରନ୍ତି ।୫ ।

ଶିବ ଚତୁର୍ଦ୍ଦଶୀ ଅଶୋକାଷ୍ଟମୀ
ଅକ୍ଷି ତୃତୀୟା ପର୍ଶୁରାମାଷ୍ଟମୀ
ଶୟନ ଚତୁର୍ଦ୍ଦଶୀ ଓ ଶ୍ରାବଣୀ
ଯମ ଦ୍ୱିତୀୟା ଓ ଷଷ୍ଠୀ ଓଢ଼ଣୀ
ଚତୁର୍ଦ୍ଦଶୀ ଯେ ଉତ୍ଥାନ,
ପ୍ରଥମ ଅଷ୍ଟମୀ, ପଉଷ ପୂର୍ଣ୍ଣମୀ,
ଯାତ୍ରାଙ୍ଗୀ ପାଳି ଏ ଦିନ ।୬ ।

ସଂକ୍ରାନ୍ତିର ନାମ ଅଟେ ମକର
ଶୁକ୍ଳ ସପ୍ତମୀଟି ମାଘ ମାସର
ଶିବରାତ୍ର ମିଶି ଚଉଦ ପାଳି
ପୁଣ୍ୟ ଯା ମିଳଇ ନୁହଁଇ କଳି
ବ୍ରତ ପାଳେ ଯେଉଁ ନର,
ଧନ ସଂପତ୍ତିରେ, ପୁର ତା'ର ପୁରେ,
ଆଶିଷ ଦିଅନ୍ତି ହର ।୭ ।

ଶିବ ଭକ୍ତେ ଏହି ବ୍ରତ କରନ୍ତି
ଯେ ଏ କ୍ଷେତ୍ର ଆଶ ପାଶେ ରୁହନ୍ତି
ବିଧିର ଲିଖନ ପରିବର୍ତ୍ତନ
ଏହି ବ୍ରତକୁ କଲେ ଅନୁଷ୍ଠାନ
ବ୍ରତ ଏ ଅତି ପବିତ୍ର,
କରେ ଯେଉଁ ଭକ୍ତ, ରହି ଶୁଚିମନ୍ତ,
ଶିବ ତାରେ ହୁନ୍ତି ପ୍ରାପ୍ତ ।୮ ।



# ପଞ୍ଚଦଶ ପ୍ରକାଶ

(ପ୍ରଭୁଙ୍କ ଭୋଗ ପ୍ରସାଦ ଓ ସେମାନଙ୍କର ପ୍ରସ୍ତୁତି ପ୍ରଣାଳୀ ବର୍ଣ୍ଣନ)

ମହାଦେବ ସିନା ଅଟନ୍ତି ଯୋଗୀ
ପ୍ରଭୁ ଲଡୁବାବା ମହାନ ଭୋଗୀ
ବଡ଼ି ସକାଳରୁ ଶୋଇବା ଯାଏଁ
ଭଳିକି ଭଳି ଭୋଗ ଲାଗି ହୁଏ
ଗଜା କଦମ୍ବାଟି ଶ୍ରେଷ୍ଠ,
ଦିନ ସାରା ରୋଷ, ଘରେ ଚାଲେ ରୋଷ,
ପ୍ରଭୁ ମୋ ଯେଣୁ ବରିଷ୍ଠ ।୧ ।
ସଙ୍କୁଡ଼ି ନିସଙ୍କୁଡ଼ି ଭୋଗ ଯେତେ
କହୁଛି ନାମ ଗୋଟି ଗୋଟି ତେତେ
ଖିଇ, ଡାଲି, ମଣ୍ଡା, ପୁର, ଖୁରୁମା
ଗୋଟିମୁଆଁ, ବୁନ୍ଦି, ସାଧା ଖୁରୁମା
ଝିଲ୍ଲୀ, କାନ୍ତି, ସରପଣା,
ଅମୃିକା ବିଳାସ, ରାବିଡ଼ି, ପାଏସ,
ମନ ଜିଣେ ସାଧା ପଣା ।୨ ।
ଛେନା ପାରିଜାତକ ,ଛେନାଗଜା
ଏଣ୍ଡୁରୀ, କଦମ୍ବା ଓ ଚୂଡ଼ାଭଜା
ଛେନା ତାଡ଼ିଆ, ଖଟା, ଗୋଟିମୁଆଁ
ସର ସୁଆଳି, ଭଜା, ଚକାମୁଆଁ
ମାଣ୍ଡୁଅ ପଣା, ଶ୍ରାବଣୀ,
ମେଣ୍ଢାସିଙ୍ଗା, କୋରା, ଗୋପାଳ, କାକରା,
ପ୍ରଭୁଙ୍କ ପ୍ରିୟ ଖଟଣୀ ।୩ ।
ଅରୁଆ ଅନ୍ନ କାନିକା ତର୍କାରୀ
ଚିତ୍ତୋଉ ମକର ଚଉତା ପୁରି
ସାଧା ଖେଚେଡ଼ି ସହ ପୁଡ଼ାଭୋଗ
ଦୁର୍ଦ୍ଦୁରା ଫୁଲକୁ ସୁବାସ ଭୋଗ
ଧନୁ ମୁଆଁ ଧନୁ ମାସେ,
ବିଡ଼ିଆ ଯେ ପାନ, ଖାଇ ଭଗବାନ,
ମହ ମହ ହୋଇ ବାସେ ।୪ ।

ଗଜା ଓ କଦମ୍ବା ପ୍ରସାଦ ଦୁଇ
ଲଡୁବାବାଙ୍କ ପ୍ରସିଦ୍ଧ ଅଟଇ
କାମନା ରଖି କା'ରେ ଉପହାର
ପଦସ୍ଥ କର୍ମଚାରୀ ଅଫିସର
ଦେବ ଯଦି କେବେ ନେଇ,
କାର୍ଯ୍ୟଟି ସଫଳ, ନୁହଁଇ ବିଫଳ,
ପ୍ରଭୁ ଆଶୀର୍ବାଦ ପାଇ ।୫ ।

ପ୍ରସ୍ତୁତି ପ୍ରଣାଳୀ କିଛି ଭୋଗର
କହୁଅଛି ଶୁଣ ତୁମ୍ଭ ଆଗର
ଛେନା ଅଳ୍ପ ଅଟା ଚିନି ଝାଳରେ
ଗଜା ଛଣା ହୋଇଥାଏ ଘିଅରେ
ନଡ଼ିଆ ପୁରର ଗୋଟି,
କଦମ୍ବା ମଧରେ, ଅତୀବ ଯତ୍ନରେ,
ଦିଏ ସର ସେବକଟି ।୬ ।

ରାବିଡ଼ିର କଥା ଏବେ କହୁଛି
ଖାଇବାକୁ ଭକ୍ତ ଯାକୁ ଝୁରୁଛି
କ୍ଷୀର୍ ମରା ଯାଇ ରାବିଡ଼ି ହୁଏ
ଚିନି ଓ କିସ୍‌ମିସ୍ ଦିଆ ଯାଏ
ଅଳେଇଚ ଗୁଣ୍ଡ ଟିକେ,
ଥରେ ଯେ ଖାଅଇ, ପୁଣି ସେ ଖୋଜଇ,
ମାଗଇ ଯାଇ ସେବକେ ।୭ ।

ମଧାହ୍ନ ଭୋଗରେ ମିଳଇ ଝିଲ୍ଲୀ
ଥରେ ଖାଇଲେ ନ ହୁଅଇ ଭୁଲି
ବିରି ଅଟା ଚିନି ଘିଅ ଲାଗଇ
ଚିତ୍ରକର ଗଢ଼ା ପ୍ରାୟ ଦିଶଇ
ମୁସୁମୁସିଆ ପାଟିକୁ,
ଚିନି ଝାଳ ଦିଆ, ଭାରି ସୁଆଦିଆ,
ଲୋଭାଏ ପ୍ରଭୁ ମନକୁ ।୮ ।

ସର ସୁଆଳୀଟି ଭାରି ବଢ଼ିଆ
ପାକୁଆ ପାଟିକୁ ସେ ସୁଆଦିଆ
କଦମ୍ବା ପାଗରୁ ଚାରୋଟି ଗୋଟି
ସୁଆଳୀ ଅଟଇ ତା'ର ନାମଟି
କ୍ଷୀର ସରେ ବୁଡ଼ି ଥାଏ,
ପ୍ରଭୁଙ୍କର ପ୍ରିୟ, ଭକତଙ୍କ ପ୍ରିୟ,
ନେବାକୁ ଲଟେରୀ ହୁଏ ।୯ ।

ଛେନା ପାରିଜାତକ ଯେଉଁ ଭୋଗ
ମିଳଇ ଭାଗ୍ୟରେ ଥିଲେ ହିଁ ଯୋଗ
ଚିନି ସାନ ଖୁରୁମା ଛେନା ଘିଅ
ମିଶାଇ ପ୍ରସ୍ତୁତ ଭକ୍ତିରେ ନିଅ
ପ୍ରଭୁଙ୍କର ପ୍ରିୟ ଏଇ,
ମନ ଆନନ୍ଦରେ, କିଣି ନିଅ ଘରେ,
ଖଜା ଘର ଠାକୁ ଯାଇ ।୧୦।
ମାଣ୍ଡୁଅ ପଣାଟି ସନ୍ଧ୍ୟାରେ ମିଳେ
ଛେନା ଖୁରୁମା ଭାସେ ପଣା ଜଳେ
କର୍ପୁର ବାସନା ଆସେ ସେଥିରୁ
ପେଟ ଥଣ୍ଡା ହୁଏ ତା' ପିଇବାରୁ
ଏ ମନ ଥଣ୍ଡା ହୁଅଇ,
ମାଟିର ବଢ଼ାରେ, ମିଳଇ ଭକ୍ତରେ,
ଭକ୍ତି ଯା' ମନେ ଥାଅଇ ।୧୧।
କାକରା ଭୋଗଟି କଲେ ଦର୍ଶନ
ଖାଅ କି ନ ଖାଅ ପୁରଇ ମନ
ଅଟା, ଗୁଡ଼ ପୁଣି ନଡ଼ିଆପୁର
ଅଳେଇଚ ଦିଆ ବଡ଼ ଆକାର
ଜଣକ ପାଇଁ ଗୋଟିଏ,
ଯଥେଷ୍ଟ ଅଟଇ, ହୃଦୟ ମୋହଇ,
ଖାଅଇ ଥରଟେ ଯିଏ ।୧୨।
ନଡ଼ିଆ କୋରା ଲଡୁବାବାଙ୍କର
ପାଟିର ଅରୁଚି କରଇ ଦୂର
କୋରା ନଡ଼ିଆ ଚିନି ଅଳେଇଚ
ପଡ଼ଇ ସେଥିରେ ଗୋଲମରିଚ
ବଡ଼ବଡ଼ ଆକାରର,
ପିଲାଙ୍କ ପାଟିକୁ, ବଡ଼ଙ୍କ ମନକୁ,
ଲାଗେ ଭାରି ମନୋହର ।୧୩।
କାନ୍ତି ବରା ଥରେ ଯିଏ ଖାଇଛି
ମନ ତା'ର ସେଠି ଲାଗି ରହିଛି
ବିରି ଅଦା ଜିରା ଘିଏ ପ୍ରସ୍ତୁତ
ଚିନି ଝୋଳଦିଆ ଲାଗେ ଅତ୍ୟନ୍ତ
ସୁଆଦିଆ ଜିହ୍ବା ପାଇଁ,
ପ୍ରଭୁ ଲଡୁକେଶ, ଖାଇ ହୁଅନ୍ତି ତୋଷ,
ପ୍ରିୟ ତାଙ୍କର ଅଟଇ ।୧୪।

ଶାଳ ପତର ଠୋଲାରେ ଏଣ୍ଡୁରୀ
ନଡ଼ିଆ ଚାଉଳ ସାଥିରେ ବିରି
ପୂଜା ହୁଏ ଦ୍ୱିପହର ଭୋଗରେ
ପେଟ ପୁରି ଯାଅଇ ଗୋଟିକରେ
ପସନ୍ଦ ଏ ପ୍ରଭୁଙ୍କର,
ନେଇଣ ଘରକୁ, ଭକ୍ତ ଖାଇବାକୁ,
ରହଇ ହୋଇ ତୟାର ।୧୫।

ପ୍ରଭୁଙ୍କ ପସନ୍ଦ ସୁବାଷ ଭୋଗ
ଓଡ଼ିଆମାନେ ଏହା ପାଇଁ ବ୍ୟଗ୍ର
ଚାଇଁ ପଖାଳକୁ ଦହି ସାଥିରେ
ଲୁଣ ଲଙ୍କା ଦିଆ ହୁଏ ସେଥିରେ
ସ୍ୱାଦ ତା ଅଟେ ନିଆରା,
ପ୍ରଭୁ ହୁଏ ଖୁସି, ଭକତ ବି ଖୁସି,
ମନ ହୁଅଇ ପିଆରା ।୧୬।





# ଷୋଡ଼ଶପ୍ରକାଶ

(ଲଡୁବାବାଙ୍କ ସେବାରେ ନିଯୁକ୍ତ ସେବାସୀମାନଙ୍କର କାର୍ଯ୍ୟବର୍ଣ୍ଣନ)

ବନ୍ଦିଣ ଲଡୁବାବାଙ୍କ ଚରଣ
ସେବାସୀଙ୍କ କଥା କହୁଛି ଶୁଣ
ସେବାସୀ ଆସିଲେ ମନ୍ଦିର ଖୋଲେ
ପ୍ରଭୁ ଚଳମାନ ସେବାସୀ ତୁଲେ
ସେବାସୀ ହିଁ ପୁଣ୍ୟବାନ,
ତା' ଦ୍ୱାରା ଖାଆନ୍ତି, ତା' ଦ୍ୱାରା ପିଅନ୍ତି,
ଭକ୍ତ ପାଇଁ ଭଗବାନ ।୧ ।
ଲଡୁକେଶ୍ୱରଙ୍କର ମନ୍ଦିରରେ
ଲାଗି ରହିଛନ୍ତି ପ୍ରଭୁ ସେବାରେ
ସବୁ ପାଟକର ସେବାସୀମାନେ
ନୀତି ମହୋତ୍ସବ ଆଜ୍ଞା ପ୍ରମାଣେ
ଦିବାନିଶି କରୁଥାନ୍ତି,
ପ୍ରଭୁ ବି ତାଙ୍କର, ଯୋଗ ଓ କ୍ଷେମର,
ସବୁ ଦାୟିତ୍ୱ ବହନ୍ତି ।୨ ।
ରାଜ ନିଯୁକ୍ତ ପରିଛା ସେବକ
ନିଯୁକ୍ତି ତାଙ୍କ ବଂଶାନୁକ୍ରମିକ
ସେବାସୀଙ୍କ କାମ ସେବା ଓ ନୀତି
ଭକ୍ତି ଭାବେ ତଦାରଖ କରନ୍ତି
ଘଟିଲେ ବାଦାନୁବାଦ,
ଡାକି ସମସ୍ତଙ୍କୁ, ସେବାସୀମାନଙ୍କୁ,
ତୁଟେଇ ଦିଅନ୍ତି ବାଦ ।୩ ।
ରାଜ ପୁରୋଧା ରାଜାଙ୍କ ନିଯୁକ୍ତ
ନୈଷ୍ଠିକ ବ୍ରାହ୍ମଣ କୁଳରେ ଜାତ
ମନ୍ଦିରରେ କେତେକ ମୁଖ୍ୟ ନୀତି
ନିଜ ହାତରେ ସେ ନିଜେ କରନ୍ତି
ରାଜାଙ୍କର ପ୍ରତିନିଧି,
ପ୍ରଭୁଙ୍କର ଅତି, ପ୍ରିୟ ସେ ଅଟନ୍ତି,
ରକ୍ଷାକରନ୍ତି ସେ ବିଧି ।୪ ।

ଚାମର ସେବକ ପ୍ରଭୁଙ୍କ ଆଗେ
ଚାମର ପକାନ୍ତି ଅତ୍ୟନ୍ତ ବାଗେ
ନୈଷ୍ଠିକ ବ୍ରାହ୍ମଣ କୁଳ ବଂଶଜ
ଭାବରେ କରନ୍ତି ପ୍ରଭୁଙ୍କ କାର୍ଯ୍ୟ
ପ୍ରଭୁଙ୍କର ସମ୍ମୁଖରେ,
ମାଘ, ବୈଶାଖର, କାର୍ତ୍ତିକ ମାସର,
ସୋମବାର ମାନଙ୍କରେ ।୫ ।

ଚଉଦ ପାଳି ଯାତ୍ରାଙ୍ଗୀ ଦିନରେ
ଯାତ୍ରାଙ୍ଗୀର ସ୍ୱତନ୍ତ୍ର ନୀତି କରେ
କରନ୍ତି ଜଣେ ସ୍ୱତନ୍ତ୍ର ସେବକ
ନାମ ତାଙ୍କର ଯାତ୍ରାଙ୍ଗୀ ସେବକ
ପ୍ରଭୁଙ୍କ କାର୍ଯ୍ୟରେ ଲୀନ,
ଜଗତ ଈଶ୍ୱର, ଶ୍ରୀଲଡୁକେଶ୍ୱର,
ଭକତର ଭଗବାନ ।୬ ।

ବିଭିନ୍ନ ଧୂପରେ ପୂଜା କରନ୍ତି
ପୂଜକ ଜାତିରେ ବ୍ରାହ୍ମଣ ଜାତି
ବିଭିନ୍ନ ଭୋଗମାନଙ୍କ ରନ୍ଧନ
ସୁଆର ସେବକ କରନ୍ତି ପୁଣ
ଖଜା ରୋଷେଇ ଘରରେ,
କରନ୍ତି ତିଆର, ସେ ପ୍ରତିସୁଆର,
ମଗ୍ନ ପ୍ରଭୁଙ୍କ କାର୍ଯ୍ୟରେ ।୭ ।

ପ୍ରତିହାରୀ ଜଗନ୍ତି ଦୁଆରକୁ
ଭୋଗସାଥେ ଆସନ୍ତି ଗମ୍ଭିରାକୁ
ଚନ୍ଦନ ଘୋରନ୍ତି ପାଳିଆ ମାଳୀ
ଚାବି ମନ୍ଦିରର ଭୋଗର ଥାଳି
ରହେ ତାଙ୍କ ଦାୟିତ୍ୱରେ,
ଭୋଗ ଯୋଗାଇବେ, ଜଳଯୋଗାଇବେ,
ଧୂପ ହେବା ସମୟରେ ।୮ ।

ବ୍ରାହ୍ମଣ ସେବକ ନାମ ଚଛେିତ
ଭୋଗ ଉତ୍ତମ ରୂପରେ ପ୍ରସ୍ତୁତ
ହେଉଛି କି ନାହିଁ ସିଏ ଦେଖନ୍ତି
ଅଖଣ୍ଡଳିଆ ଦ୍ୱୀପ ଯେ ଜାଳନ୍ତି
ପାନରା ଯୋଗାନ୍ତି ପାନ,
ବେଦଙ୍କ ବ୍ରାହ୍ମଣ, ବେଦ ଉଚ୍ଚାରଣ,
ଶୁଣି ଖୁସି ପଞ୍ଚାନନ ।୯ ।

ମାଳି କରନ୍ତି ବାନା ବନ୍ଧାସେବା
କାର୍ଯ୍ୟ ମନ୍ଦିରରେ ବାନା ବାନ୍ଧିବା
କାହାଳିଆ ସେବା ତନ୍ତୀ ଜାତିର
ଘଣ୍ଟୁଆ ସେବା ମାଳିମାନଙ୍କର
ମଶାଲିଆ ଯେ ଭଣ୍ଡାରୀ,
ପ୍ରଭୁଙ୍କ ସାମ୍ନାରେ, ମଶାଲ ହସ୍ତରେ,
ଥାନ୍ତି ଠିଆହୋଇ କରି ।୧୦।
ଚଉଧଳିଆ ମାଳିଏ ଅଟନ୍ତି
ବେଢ଼ା ବେଳେ ଚଉଧଳ କାନ୍ଧାନ୍ତି
ଜଉତିଶ ଗ୍ରହ ବିପ୍ର ବ୍ରାହ୍ମଣ
ବୃଷଭଠି କରେ ପାଞ୍ଜି ଶୁଣାଣ
ତେଲ ତେଲିଏ ଯୋଗାନ୍ତି,
ସୁତା କଣ୍ଡା ତନ୍ତୀ, ଆଜ୍ଞାରେ ଯୋଗାନ୍ତି,
ଖେୟାରେ ଭୋଗ ପାଆନ୍ତି ।୧୧।
ଗୀତଗୋବିନ୍ଦ ପାଠକ ବ୍ରାହ୍ମଣ
ଚତୁସମ ବେଳେ କରନ୍ତି ଗାନ
କଂସାରୀ କଂସା ଗିନାଦି ଯୋଗାନ୍ତି
ଦୁର୍ଗାପୂଜା ବେଳେ କାର୍ଯ୍ୟେ ଲାଗନ୍ତି
ଚଷା ଆଖୁ ଗୁଡ଼ ଧାନ,
ବଲ୍ଲଭ ଗୁଡ଼ିଆ, କୁମ୍ଭାର କୁଡୁଆ,
ମୁତୁରୀ ଯୋଗାଏ ପାଣ ।୧୨।
ତୁଳାଭିଣା ଅଟେ ଭିଣା ଜାତିର
ମହାଦୀପ ସେବା ମାଳି ଜାତିର
ମହାଦୀପ ଯୋଗାଣିଆ ବ୍ରାହ୍ମଣ
ବ୍ରାହ୍ମଣ ସେବକ ଦରଜି ପୁଣ
ମହାରଣାଟି ବଢ଼େଇ,
ପ୍ରଭୁଙ୍କର ରଥ, ଗଢ଼େ ଯଥାଯଥ,
ଢ଼ିଲା ମୋଟେ ନ କରଇ ।୧୩।
ଧୋବା ବସ୍ତ୍ର ସବୁ ସଫାକରନ୍ତି
ନାଉରିଆ ମାଳି ଡଙ୍ଗା ଚଳାନ୍ତି
ମନ୍ଦିର ସଫାକାରୀ ତନ୍ତୀ ଜାତି
ପ୍ରଭୁଙ୍କର ସେହି ହିଁ ପ୍ରିୟ ଅତି
ବଡ଼ମାଳି ଅଭିଷେକ,
ସମୟରେ ନୀର, ପକାଏ ଚାମର,
ପ୍ରଭୁଙ୍କ ପ୍ରିୟ ସେବକ ।୧୪।

ହାଡ଼ି ସେବକ ବାଜା ଯେ ବଜାନ୍ତି
ସିଂହଦ୍ୱାର ତୁଠ ସଫା କରନ୍ତି
ଯୋଗାନ୍ତି ଚାଙ୍ଗୁଡ଼ି କୁଲା ଭୋଗେଇ
ପ୍ରଭୁଙ୍କର ପ୍ରିୟ ସେବକ ସେଇ
ଏମନ୍ତ ସେବାସୀ ଗଣ,
ପ୍ରଭୁଙ୍କ କାର୍ଯ୍ୟରେ, ଭକତି ଭାବରେ,
ଥାଆନ୍ତି ସଦା ନିମଗ୍ନ । ୧୫ ।

ଭକ୍ତ ପ୍ରିୟ ପ୍ରଭୁ ଲଡୁକେଶ୍ୱର
ସେବକ ତା ପ୍ରିୟରୁ ପ୍ରିୟତର
ପୂର୍ବଜନ୍ମ ତପସ୍ୟା ପୁଣ୍ୟବଳେ
ଏ ଜନ୍ମେ ଜନମ ସେବକ କୁଳେ
ସୌଭାଗ୍ୟ ଏହା ତାଙ୍କର,
ଯାହା ସେବାପାଇଁ, ଦେବତା ଆଗ୍ରହୀ,
ମିଳିଛି ସେବା ତାହାର । ୧୬ ।





# ସପ୍ତଦଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରରେ ହେଉଥିବା ଦୈନିକ ନୀତିର ବର୍ଣ୍ଣନ)

ଦେବାଧିଦେବ ପ୍ରଭୁ ଲଡୁବାବା
ଦୈନିକ ନୀତି କଥା କି କହିବା
ରାଜାଧିରାଜ ସେ ପ୍ରଭୁ ଅଟନ୍ତି
ସକାଳୁ ରାତି ସେବକେ ଖଟନ୍ତି
ହୁଏ ନୀତି ପରେ ନୀତି,
ଶ୍ରୀ ଲଡୁକେଶ୍ୱର, ସଂସାରରେ ସାର,
ନୀତି ପାଇଁ ତାଙ୍କ ଖ୍ୟାତି ।୧ ।

ବ୍ରାହ୍ମ ମୁହୂର୍ତ୍ତେ ମଙ୍ଗଳ ଆଳତୀ
ପ୍ରଥମେ କର୍ପୁର ଦ୍ୱାରା କରନ୍ତି
ଦୁଇଟି କାଠି ଆଳତୀ ତାପରେ
ଆଳତୀ ହୋଇ ସାରିଲେ ମନ୍ଦିରେ
ମିଳଇ ପ୍ରଭୁ ଦର୍ଶନ,
ପାହାନ୍ତା ପହରୁ, ଯିଏ ଯା' ସ୍ଥାନରୁ,
ଆସିଥାନ୍ତି ଭକ୍ତ ଜନ ।୨ ।

ଆଳତୀ ପରେ ହୁଅଇ ଉଲାଗି
ବିଲ୍ୱ ପତ୍ର ଫୁଲ ଚନ୍ଦନ ଲାଗି
ପୂର୍ବଦିନ ରାତି ବଡ଼ସିଂହାରେ
ଯାହା ହୋଇଥାଏ ପ୍ରଭୁ ଉପରେ
ତାହାକୁ ମାଳି ସେବକ,
କରି ନିଷ୍କାସନ, ଅନ ଆବରଣ,
କରଇ, ଥାଏ ଯେତେକ ।୩ ।

ବ୍ରହ୍ମ କପାଳୀ ନାମକ ଦୋଷରୁ
ମୁକତ ହୋଇବା ପାଇଁ ସେଥିରୁ
ମହାଶୁଦ୍ର ମାଳି ସେବକ ଦ୍ୱାରା
ଲାଗି ହୁଅନ୍ତି ଜଳ କେତେ ଗରା
ମାଳି ଲାଗି କରି ନୀର,
ମଙ୍ଗଳ ବାଞ୍ଛଇ, ଭକ୍ତ ନାମ କହି,
ତୋଷ ହୁଅନ୍ତି ଈଶ୍ୱର ।୪ ।

ତାପରେ ହୁଅଇ ଦନ୍ତ ଧାବନ
ମୁତୁରି ଦାନ୍ତକାଠି ଦିଏ ପାଣ
ବ୍ରାହ୍ମଣ ସେବକ ଏ ସେବାକରେ
କରେ ଧରି ସାଙ୍କେତିକ ଭାବରେ
ତାପରେ ହୁଅଇ ସ୍ନାନ,
ମାଳିମାନେ ଜଳ, ଢାଳନ୍ତି ସକଳ,
ଆନନ୍ଦିତ ଭଗବାନ ।୫ ।

ମହାଦେବ ଅଟନ୍ତି ସ୍ନାନ ପ୍ରିୟ
ତାପରେ ଅଁଳା ଲାଗି ସମୟ
ବ୍ରାହ୍ମଣ ସେବକ ଲାଗି କରନ୍ତି
ପ୍ରଥମାବକାଶ ତାକୁ କହନ୍ତି
ତାହା ପରେ ପୁଣିସ୍ନାନ,
ସ୍ନାନ ହେବା ପରେ, ଲିଙ୍ଗ ଗାମୁଛାରେ,
ପୋଛା ହୁଅଇ ସମ୍ପୂର୍ଣ୍ଣ ।୬ ।

ଦ୍ୱିତୀୟ ଅବକାଶ ହୁଏ ପୁଣି
ପଞ୍ଚାମୃତ ସ୍ନାନ ପରେ ଘର୍ଷଣି
ଅବକାଶ ଏଥିରେ ଘଷା ଯାଏ
ବ୍ରାହ୍ମଣ ସେବକ ଦ୍ୱାରା ଏ ହୁଏ
ଜଳଶାୟୀ ପରେ ପରେ,
ଭକ୍ତଙ୍କ ପକ୍ଷରୁ, ମାଳିଙ୍କ ଭିତରୁ,
କରନ୍ତି ସେବା ଖୁସିରେ ।୭ ।

ମାନସିକରେ ଜଳଶାୟୀ ହୁଏ
ପୂର୍ଣ୍ଣ ଜଳଶାୟୀ ଅଧା ବା କିଏ
ମହାସୁଲ ତଦନୁସାରେ ଦେଇ
ପୂର୍ବରୁ ଆଆନ୍ତି ରସିଦ ନେଇ
ଗଙ୍ଗାଧର ଗଙ୍ଗାଧର,
ସେବକ ଭକତ, ଡାକରେ କମ୍ପିତ,
ହୁଅଇ ସାରା ମନ୍ଦିର ।୮ ।

ଜଳଶାୟୀ ପରେ ପୁଷ୍ପ ଚନ୍ଦନ
ବିଲ୍ୱପତ୍ର ବସ୍ତ୍ର ଲାଗି ହୋଇଣ
ସର୍ବସାଧାରଣ ଦର୍ଶନ ପାଇଁ
ମନ୍ଦିର ସାହାଣ ମେଲା ହୁଅଇ
ହୋମ ପାକଶାଳା ଘରେ,
ପୁରୋଧା କରନ୍ତି, ଅଗ୍ନି ଆବାହନ୍ତି,
ସୁଆର ରୋଷେଇ କରେ ।୯ ।

ଏଣେ ମହାପ୍ରଭୁଙ୍କର ପାଖରେ
ବେଦପାଠ କାମ ବ୍ରାହ୍ମଣକରେ
ସାଢ଼େ ସାତଟାରେ ବଲ୍ଲଭ ଭୋଗ
ଜଳଖିଆ ପ୍ରଭୁ ଖାଆନ୍ତି ଆଗ
ବୃଷଭ ପାଶେ ଜ୍ୟୋତିଷ,
ପାଞ୍ଜିକୁ ପଢ଼ନ୍ତି, ଭାଗ୍ୟ ପ୍ରକାଶନ୍ତି,
ଦିନର ଯାହା ବିଶେଷ ।୧୦।
ବଲ୍ଲଭେ ଭୋଗ ହୁଏ ଚକା ମୁଆଁ
ଖଇ ଗୋପାଳ କୋରା ଗୋଟି ମୁଆଁ
ବହୁତ ବଢ଼ିଆ ଛୋଟ ଖୁରୁମା
ପ୍ରଭୁଙ୍କର ପ୍ରିୟ ପୁରଖୁରୁମା
ଖଜା ବିଭିନ୍ନ ଜାତିର,
ଭୋଗହେଲା ପରେ, ଯାଏ ବିକ୍ରି ଘରେ,
ଭକତେ ନିଅନ୍ତି ଘର ।୧୧।
ସକାଳ ଧୂପ ହୁଏ ଦଶଟାରେ
ବ୍ରାହ୍ମଣ ପୂଜନ୍ତି ଏହି ଧୂପରେ
କାନିକା ଡାଲି ତର୍କାରି ଖେଚେଡ଼ି
ଖଟା ପାଏସ ଭଜା ଏ ସଙ୍ଖୁଡ଼ି
ଭୋଗରେ ପୂଜା ହୁଅଇ,
ପ୍ରସାଦ ରୂପରେ, ମିଳେ ତା ଭକ୍ତରେ,
ଧୂପ ପରେ ମୂଲ୍ୟ ଦେଇ ।୧୨।
ପୁଡ଼ାଭୋଗ ଏଗାରଟା ଭିତରେ
ପ୍ରଥମେ ବ୍ରାହ୍ମଣେ ଅର୍ପନ୍ତି ତା'ରେ
ସାଥିରେଏଣ୍ଡୁରୀ ପୂଜା ହୁଅଇ
ତାପରେ ମାଳିଏ ପୁଡ଼ାକୁ ନେଇ
ପୂଜନ୍ତି ବଜାଇ ତାଳି,
ବହୁ ପୁରାତନ, ଅଟେ ଏ ବିଧାନ,
ଭାବ ପୂଜା ଏ ଅଟଇ ।୧୩।
ପୁଡ଼ାଭୋଗ ପରେ ଉଲାଗି ହୋଇ
କ୍ଷୀର ଅଭିଷେକ ନୀତି ହୁଅଇ
ପୁରୋଧା କରନ୍ତି ଏଗାରଟାରେ
ଭକତି ଭାବରେ ଶତରୁଦ୍ରୀରେ
ପ୍ରଭୁଙ୍କ ପ୍ରିୟ ଏ ନୀତି,
ପ୍ରିୟ ପ୍ରଭୁଙ୍କର, ପ୍ରଭୁ ମହେଶ୍ୱର,
ଲାଗି ହୁଏ ତେଣୁ ନିତି ।୧୪।

ତାପରେ ହୁଅଇ ଟଭା ମର୍ଦ୍ଦନ
ଜଳଶାୟୀ ପୁଣି ହୁଏ ସମ୍ପର୍ଣ୍ଣ
ଶ୍ରୀଅଙ୍ଗ ପୋଛା ସୁମନ ଚନ୍ଦନ
ଝିଲ୍ଲୀ ଭୋଗ କରିଥାନ୍ତି ବ୍ରାହ୍ମଣ
ତୁଳସୀ ମଞ୍ଜରୀ ଦେଇ,
ଅବକାଶ ନୀତି, ତୃତୀୟ ଏହି ଟି,
ଲଡୁବାବାଙ୍କ ହୁଅଇ ।୧୫।
ସାଢ଼େଏଗାରରେ ଏ ନୀତିହୋଇ
ବାରଟାରେ ଧୂପ ଘଣ୍ଟ ବାଜଇ
ଦ୍ୱିପହର ଧୂପ ଅରୁଆ ଅନ୍ନ
ଡାଲି ଖିରି ସହିତ ଦଧି ଅନ୍ନ
ସଙ୍କୁଡ଼ି ଭୋଗ ହୁଅଇ,
ତର୍କାରୀ କାକରା, ବିରିକାନ୍ତି ବରା,
ଭକତେ ଥାନ୍ତି ଅନେଇଁ ।୧୬।
ପହୁଡ଼ହୁଅଇ ଦ୍ୱିପହରରେ
ମନ୍ଦିର ଖୋଲେ ସନ୍ଧ୍ୟା ସମୟରେ
ଆଳତୀ ହୋଇ ଟେରା ଭୋଗ ହୁଏ
ଟେରା ପ୍ରସାଦକୁ ଭକ୍ତ ଲୋଭାଏ
ରାବିଡ଼ି ଓ ସାଧା ପଣା,
ଅମ୍ବିକା ବିଳାସ, ଗୋପାଳ ସରସ,
ଛେନାର ମାଣ୍ଡୁଅ ପଣା ।୧୭।
ଟେରା ପରେ ଚତୁର୍ଥ ଅବକାଶ
ଫୁଲୁରୀ ମର୍ଦ୍ଦନ ନୀତି ବିଶେଷ
ଉଲାଗି ଓ ରାଶିତେଲ ମର୍ଦ୍ଦନ
ତାପରେ ଗଙ୍ଗା ଉଦକରେ ସ୍ନାନ
ବଡ଼ପଣ୍ଡା କରିଥାନ୍ତି,
ପ୍ରଭୁଙ୍କ ସେବାରେ, ହୃଦୟ ମନରେ,
ନିଯୁକ୍ତ ସେ ରହିଥାନ୍ତି ।୧୮।
ମାନସିକ ଜଳଶାୟୀ ତାପରେ
ମାଳି ସେବକେ କରନ୍ତି ଖୁସିରେ
ଆଣି ନିଜ ନିଜର ଯଜମାନ
ଜଳ ଢାଳନ୍ତି କହି ନାମ ମାନ
ଯଜମାନ ଖୁସି ହୋଇ,
ସେବକ ମାନଙ୍କୁ, ଦକ୍ଷିଣା ଦେବାକୁ,
କୃପଣତା ନ କରଇ ।୧୯।

ଫୁଲ ଚନ୍ଦନ ଲାଗି ହେବା ପରେ
ସନ୍ଧ୍ୟା ବେଳରେ ସାଢ଼େ ଛଅଟାରେ
ପ୍ରଭୁଙ୍କ ସରପଣା ଭୋଗ ହୋଇ
ପ୍ରସାଦ ରୂପେ ଭକ୍ତକୁ ମିଳଇ
ମିଳେ ଭଲ ଥିଲେ ବେଳା,
ଶ୍ରୀଲଡୁକେଶ୍ୱର, ବାବା ମହେଶ୍ୱର,
ଖୁସି ଥିବେ ଯଦି ଭୋଳା ।୨୦।

ସାତଟାରୁ ସାଢ଼େ ସାତ ମଧରେ
ସନ୍ଧ୍ୟା ଧୂପ ହୁଅଇ ମନ୍ଦିରରେ
ଅରୁଆ ଡ଼ାଲମା କଲେ ଅର୍ପଣ
ତାପରେ ହୁଏ ଯାତ୍ରୀ ଦରଶନ
ତାପରେ ହୁଏ ଉଲାଗି,
ଚତୁସମ ପାଇଁ, ପ୍ରସ୍ତୁତି ଚାଲଇ,
ସେବାସୀ ରୁହନ୍ତି ଜଗି ।୨୧।

ସାଢ଼େସାତରୁ ଆଠଟା ମଧରେ
ଚତୁସମ ନୀତି ହୁଏ ମନ୍ଦିରେ
ପଞ୍ଚମ ଅବକାଶ ଏ ଅଟଇ
ଏଥିରେ କାକରା ଭୋଗ ଲାଗଇ
ଗୀତଗୋବିନ୍ଦ ଗାୟନ,
ହୁଏ ଏ ନୀତିରେ, ବାବା ମନ୍ଦିରରେ,
ଶୁଣି ଖୁସି ତ୍ରିଲୋଚନ ।୨୨।

ରାତି ନଅଟାରେ ବଡ଼ସିଂହାର
ଗଜା କଦମ୍ବା ସାଥେ ବୁନ୍ଦି ସର
ତାଡ଼ିଆ ସାଥିରେ ପୁରଖୁରୁମା
ଭୋଗଲାଗେ ପୁଣି ଛୋଟ ଖୁରୁମା
ରାତ୍ରୀ ଜଳଖିଆ ଖାଇ,
ଡ଼ମ୍ବରୁ ଉପରେ, ଉମା ମହେଶ୍ୱର,
ଆସୀନ ହୁଅନ୍ତି ଯାଇ ।୨୩।

ଖଟ ଶେଜ ପଣା ଭୋଗ ହୋଇବ
ଆଳତୀ ସେହି ଠାବେ କରାଯିବ
ପାରିଜାତକ ଭୋଗ ହୋଇ ପୁଣି
ଆଳତୀ ହେବେ ପ୍ରଭୁ ଠାକୁରାଣୀ
ପହଡ଼ ଖଟ ଉପରେ,
ପ୍ରଭୁ ପଞ୍ଚାନନ, କରିଲେ ଶୟନ,
ସେବାସୀ ଫେରନ୍ତି ଘରେ ।୨୪।



# ଅଷ୍ଟାଦଶ ପ୍ରକାଶ

(ଲଡୁବାବାଙ୍କ ଓ ପାର୍ଶ୍ୱ ଦେବତାଙ୍କ ବେଶ ବର୍ଣ୍ଣନ)

ଲଡୁକେଶ୍ୱରଙ୍କର ମନ୍ଦିରରେ
ପୂଜା ପର୍ବ ହୁଏ ସ୍ମାର୍ତ୍ତ ମତରେ
ବିଷ୍ଣୁ ସୂର୍ଯ୍ୟ ଗଣେଶ ଶକ୍ତି ଶିବ
ସମାନ ବୋଲି ଭାବି ଏ ପଞ୍ଚଦେବ
ପୂଜା କରିବାର ବିଧି,
ସ୍ମାର୍ତ୍ତ ମତ ଇଏ, କହନ୍ତି ଜ୍ଞାନୀ ଏ,
ରହିଛି ଯାର ପ୍ରସିଦ୍ଧି ।୧ ।
ନିରପେକ୍ଷ ଏହି ମତ ଅଟଇ
ଏ ପଥ ମଧମ ପନ୍ଥା ବୋଲାଇ
ବହୁ ଦେବତା ମଧ୍ୟେ ଏକ ବ୍ରହ୍ମ
ଆଦର୍ଶ ଚିନ୍ତନ ଅଟେ ଉତ୍ତମ
ଏ ମତ ଏଠାରେ ଚଳେ,
ସବୁ ସମ୍ପ୍ରଦାୟ, ଏଠି ସମନ୍ୱୟ,
ସର୍ବେ ଆସନ୍ତି ମନ୍ଦିରେ ।୨ ।
ଲଡୁବାବା ଏଠାରେ ହରିହର
ପାର୍ଶ୍ୱ ଦେବତା ଗଣେଶ ତାଙ୍କର
ଐଶାନ୍ୟ କୋଣେ ପାର୍ବତୀ ଅଛନ୍ତି
ଅଗ୍ନି କୋଣେ ସୂର୍ଯ୍ୟ ପୂଜା ପାଆନ୍ତି
ସବୁ ଦେବଙ୍କୁ ସମ୍ମାନ,
ଏହି ମନ୍ଦିରର, ଅଟେ ଏ ବିଚାର,
ନାହିଁ କା'ର ହୀନମାନ ।୩ ।
ନୈବେଦ୍ୟ ପ୍ରିୟ ପ୍ରଭୁ ଗଜାନନ
ଅଳଙ୍କାର ପ୍ରିୟ ଶ୍ରୀନାରାୟଣ
ଜଳଧାରା ପ୍ରିୟ ଯେ ମହେଶ୍ୱର
ସୂର୍ଯ୍ୟ ଭଲ ପାଆନ୍ତି ନମସ୍କାର
ମାତାଙ୍କ ପ୍ରିୟ ସୁମନ,
ପ୍ରିୟ ଯାହା ଯା'ର, ଦେଲେ ଉପହାର,
ତୋଷ ହୁଏ ତାଙ୍କ ମନ ।୪ ।

ଲଡୁକେଶ୍ୱର ଯେଣୁ ହରିହର
ବେଶ ଶୃଙ୍ଗାର ହୁଅଇ ତାଙ୍କର
ପୁଷ୍ପ ଓ ରତ୍ନ ଶୃଙ୍ଗାର ହୁଅଇ
ବେଶ, ଅଭିଷେକ ହୁଅଇ ଦୁଇ
ଦୁହିଁଙ୍କ ସନ୍ତୋଷ ପାଇଁ,
ହୁଏ ଅହର୍ନିଶ, ପାଞ୍ଚ ଅବକାଶ,
ସୁମନ, ବସ୍ତ୍ର ଚଢ଼ାଇ ।୫ ।

ଲଡୁକେଶ୍ୱରଙ୍କର ମନ୍ଦିରରେ
ଏକମାତ୍ର ବେଶ ହୁଏ ବର୍ଷରେ
ଜାଗର,କାର୍ତ୍ତିକ ପୂର୍ଣ୍ଣିମା ଦିନ
ରାବଣର କୈଳାସ ଉତ୍ପାଟନ
ଦିଶଇ କି ମନୋହର,
ପ୍ରଭୁଙ୍କ ଦିବ୍ୟତ୍ୱ, ପ୍ରଭୁଙ୍କ ପ୍ରଭୁତ୍ୱ,
ସଂସାରେ ହୁଏ ବିସ୍ତାର ।୬ ।

ରାବଣ କଠିନ ତପସ୍ୟା କଲା
ତପ କରି ତପେ ସଫଳ ହେଲା
ବ୍ରହ୍ମାଙ୍କ ପାଖରୁ ପାଇଣ ବର
ଅହଂକାରର ହେଇଲା ଚାକର
ଗରବରେ ଅନ୍ଧ ହୋଇ,
ସାରା ତ୍ରିଭୁବନ, କଲା ଛିନ୍ନ ଭିନ୍ନ,
ନିଜର ବଳ ଦେଖାଇ ।୭ ।

ଶିବଙ୍କର ସର୍ବ ଶ୍ରେଷ୍ଠ ଭକତ
ଭାବେ କାମନା ଲିଙ୍ଗ ଉତ୍ପାଟିତ
କରିନେବ ତା ସହ ଲଙ୍କାପୁରେ
ପ୍ରଭୁ ରହିବେ ସଦା ତା ପାଶରେ
ପୁଷ୍ପକ ଯାନରେ ଯାଇ,
ଆସି ଏ କ୍ଷେତ୍ରେ ସେ, ନେବାର ଲାଳସେ,
ଦୁଇ ହାତରେ ଧରଇ ।୮ ।

ଦୁଇ ହାତରେ କଲା ଉତ୍ପାଟନ
ଏକଥା ଜାଣିଲେ ପଞ୍ଚ ଆନନ
ନିଜକୁ କରିଲେ ଗରିଷ୍ଠ ଅତି
ରାବଣ ହୃଦେ ସଂଚରିଲା ଭିତି
ଛାଡ଼ିଣ ଗଲା ପଳାଇ,
ଗରବ ଗଞ୍ଜନ, ପ୍ରଭୁ ତ୍ରିଲୋଚନ,
ସେ କାଳୁ ବେଶ ହୁଅଇ ।୯ ।

ରାବଣ ମୂର୍ତ୍ତିଟି କାଠ ନିର୍ମିତ
ରୂପାର ତ୍ରିଶୂଳ ପାଦ ଓ ହାତ
ପ୍ରଭା ଓ ଘୋଡ଼ଣୀ ଦୁଇ ରୂପାରେ
ଚନ୍ଦ୍ରଟି ତିଆରି ହୁଏ ସୁନାରେ
ପୋହଳାର ସୁନାମାଳ,
ଫୁଲ ବିଲ୍ୱପତ୍ର, ପୁଣି ପାଟବସ୍ତ୍ର,
ରୂପାବେଲ ପତ୍ର ମାଳ ।୧୦।
ଏ ସମସ୍ତ ଲାଗି ବେଶ ହୁଅନ୍ତି
ସେବାସୀମାନେ ଶ୍ରଦ୍ଧାରେ ସଜାନ୍ତି
ଗର୍ବ ଗଞ୍ଜନକାରୀ ପଞ୍ଚାନନ
ରାବଣର ଗର୍ବ କଲେ ଖଣ୍ଡନ
ତା' ପ୍ରତୀକ ଏହି ବେଶ,
ପ୍ରତ୍ୟେକ ବରଷ, ଭକତେ ହରଷ,
ଦେଖି ବେଶେ ଲଡୁକେଶ ।୧୧।
ପଞ୍ଚୁକରେ ଜଗନ୍ନାଥ ମନ୍ଦିରେ
ଜଗନ୍ନାଥ ଭିନ୍ନଭିନ୍ନ ବେଶରେ
ଭକତଙ୍କୁ ଦେଇଥାନ୍ତି ଦର୍ଶନ
କଳାମୁଖ ଭକ୍ତ ମନୋରଂଜନ
ସଙ୍ଗେ ଘେନି ଭଗ୍ନି ଭାଇ,
ନୀଳାଦ୍ରି ବିହାରୀ, ଶଙ୍ଖଚକ୍ର ଧାରୀ,
ଭକତ ଉଦ୍ଧାର ପାଇଁ ।୧୨।
ଏକାଦଶୀରେ ଲକ୍ଷ୍ମୀ ନାରାୟଣ
ବାଙ୍କଚୂଡ଼ା ବେଶ ଦ୍ୱାଦଶୀ ଦିନ
ଆଡ଼କିଆ ବେଶ ତ୍ରୟୋଦଶୀରେ
ଚତୁର୍ଦ୍ଦଶୀରେ ନୃସିଂହ ବେଶରେ
ବେଶ ରାଜା ରାଜେଶ୍ୱର,
ପୂର୍ଣ୍ଣିମାର ଦିନ, କରିଣ ଧାରଣ,
ମୋହନ୍ତି ମନ ଭକ୍ତର ।୧୩।
ପଞ୍ଚୁକରେ ବଢ଼ା ତିଥି ପଡ଼ିଲେ
ନାଗାର୍ଜ୍ଜୁନ ବେଶ ହୁଅଇ ଭଲେ
ସେବକେ ଭକତେ ବଡ଼ ଶ୍ରଦ୍ଧାରେ
ସଜାନ୍ତି ପ୍ରଭୁଙ୍କୁ ସୋଲ ଜରିରେ
ପୁଷ୍ପ ଆଦି ଅଳଙ୍କାର,
ପ୍ରଭୁଙ୍କୁ ମଣ୍ଡନ୍ତି, ଆନନ୍ଦ ଘେନନ୍ତି,
ବେଶ ଦେଖି ମନୋହର ।୧୪।

ପାର୍ବତୀ ମାଆ ବି ବେଶ ହୁଅନ୍ତି
ଷୋଳପୂଜା ଦଶରା ନବରାତ୍ରି
ଶାଢ୍ରୀ ଫୁଲଚୁଆ ଚନ୍ଦନ ଦେଇ
ସଜାନ୍ତି ମାତାଙ୍କୁ ସେବକ ଭାଇ
ମାଆ ମୋ ଭୁବନେଶ୍ୱରୀ,
ଦର୍ଶନ ଦେଇଣ, ବେଶେ ଭିନ୍ନଭିନ୍ନ,
ମୋହେ ଭକତେ ଈଶ୍ୱରୀ ।୧୫।

ପ୍ରଭୁଙ୍କର ବେଶ ଦିଶେ ସୁନ୍ଦର
ଭକତ ମନ ଆନନ୍ଦ ଅପାର
ଭୁଲିଯାଏ ସିଏ ଭବ ବନ୍ଧନ
ଲୀଳା ପ୍ରଭୁଙ୍କର କେଡ଼େ ମହାନ
ଲୀଳାଧାରୀଙ୍କ ଚରଣେ,
ତନୁ ମନ ଦେଇ, ପ୍ରଣାମ କରଇ,
ଉଦ୍ଧାରନ୍ତୁ ଦୀନ ଜନେ ।୧୬।





# ଊନବିଂଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରରେ ରୁଦ୍ରାଭିଷେକ, ଜଳାଭିଷେକ ଏବଂ
ବିଲ୍ୱ ପତ୍ର ଅଭିଷେକ ବର୍ଣ୍ଣନ)

ରୁଦ୍ରାଭିଷେକ ଶିବ ପୂଜନରେ
ରହିଛି ବିଶେଷ ଅଙ୍ଗ ଭାବରେ
ଶତରୁଦ୍ରୀ ବା ସହସ୍ରରୁଦ୍ରୀରେ
ଅଭିଷେକ ହୁଏ ଶିବଲିଙ୍ଗରେ
ଲଡୁବାବାଙ୍କ ମନ୍ଦିରେ,
ହୋଇଛି ବାରଣ, ଏହି ନୀତି ପୁଣ,
ହୁଏ ନାହିଁ ଏହି ଠାରେ ।୧ ।
ରୁଦ୍ର ଅଭିଷେକ କରିବା ପାଇଁ
ଯଦି ମନ୍ଦିରେ କେ ଭକ୍ତ ଆସଇ
ମନ୍ଦିର ଦକ୍ଷିଣ ଦ୍ୱାର ସାମ୍ନାରେ
ବୈଦ୍ୟନାଥ ପ୍ରତିନିଧି ଭାବରେ
କେଉଁ କାଳରୁ ଅଛନ୍ତି,
ପାଖରେ ତାଙ୍କରି, ଅଭିଷେକ କରି,
ସମାନ ଫଳ ପାଆନ୍ତି ।୨ ।
କର୍ମକାଣ୍ଡି ବ୍ରାହ୍ମଣ ଅଭିଷେକ
କରନ୍ତି ସେହି ଜ୍ଞାନ ଥିବା ଲୋକ
ନିଷ୍ଠାରେ ନୀତିରେ ଉପବାସରେ
ଯଜମାନ ହିତ ବହି ମନରେ
ନୀରେ କ୍ଷୀରେ ଗଙ୍ଗା ଜଳେ,
ଆଖୁର ରସରେ, ଅଥବା ଘୃତରେ,
କର୍ମ ଦେଖି ଫଳ ମିଳେ ।୩ ।
ରୁଦ୍ର ଅଭିଷେକ କରିବା ପାଇଁ
ମନ୍ଦିରେ ଯେଣୁ ଅନୁମତି ନାହିଁ
ଭକ୍ତ ଅଭିଷେକ ଯଦି ଚାହିଁବ
ଜଳ ଅଭିଷେକ କରି ପାରିବ
ଜଳଶାୟୀ ନାମ ତାର,
ସେ ମାଳି ସେବକ, ଜଳ ଅଭିଷେକ,
କରନ୍ତି ଖୁସି ମନର ।୪ ।

ଜଳଧାରା ପ୍ରିୟ ଲଡୁକେଶ୍ୱର
ଗାଧୁଅଛନ୍ତି ଦିନକୁ ପାଞ୍ଚ ଥର
ମାନସିକ ବା ଗ୍ରହପୀଡ଼ା ଥିଲେ
ଭକ୍ତେ ଜଳଶାୟୀ ପ୍ରଭୁଙ୍କୁ କଲେ
ମିଳେ ପୁଣ୍ୟ ପାପ କଟି,
ମାନସିକ ଯାହା, ପୂର୍ଣ୍ଣ ହୁଏ ତାହା,
ଗ୍ରହ ଦୋଷ ଯାଏ ମିଟି ।୫ ।

ଜଳଶାୟୀ ହୁଏ ଦୁଇ ପ୍ରକାର
ଅର୍ଦ୍ଧ ଅବା ପୂର୍ଣ୍ଣ ନାମ ତାହାର
ଚଉବନ ଗରା ଜଳ ଅର୍ଦ୍ଧରେ
ଶହେ ଆଠ ଗରା ଜଳ ପୂର୍ଣ୍ଣରେ
ଚଢ଼ା ହୁଏ ପ୍ରଭୁ ପରେ,
ଡାକି ଗଙ୍ଗାଧର, ନାମ ବାରବାର,
ଢାଳନ୍ତି ମନ ଖୁସିରେ ।୬ ।

ସକାଳ ସନ୍ଧ୍ୟାରେ ଦୁଇ ବେଳାରେ
ଦ୍ୱିତୀୟ ଚତୁର୍ଥ ଅବକାଶରେ
ପ୍ରତିଦିନ ଜଳଶାୟୀ ହୁଅଇ
ମାଳି ସେବକେ ଯଜମାନ ପାଇଁ
ନିଷ୍ଠାର ସହ କରନ୍ତି,
ଭକ୍ତ ମନସ୍କାମ, ହେଲେ ପୂର୍ଣ୍ଣକାମ,
ସେବକ ଦକ୍ଷିଣା ପାନ୍ତି ।୭ ।

ସ୍ୱତନ୍ତ୍ର ସୋମବାର ଓ ସଂକ୍ରାନ୍ତି
ଜଳଶାୟୀ ବହୁ ଭକ୍ତ କରନ୍ତି
ଅଧିକ ଭକ୍ତ ହେଲେ ମଧାହ୍ନରେ
ଜଳଶାୟୀ ହୁଏ ନୀତି ସାଥିରେ
ମାଳିଏ ବୁହନ୍ତି ପାଣି,
କାଢ଼ନ୍ତି ଗରାରେ, ନିଅନ୍ତି ହଣ୍ଡାରେ,
ଦିଅନ୍ତି କୂଅରୁ ଆଣି ।୮ ।

ଶୁଳ୍କ ଲାଗଇ ଜଳଶାୟୀ କଲେ
ଅଫିସ ଦିଏ ରସିଦ ତା ତୁଲେ
କ୍ରମ ନିର୍ଣ୍ଣୟ ହୁଏ ଲଟେରୀରେ
ଜଳଶାୟୀ କରାଯାଏ କ୍ରମରେ
ଜଳ ଆଣିବାକୁ ଲୋକ,
ସାହି ଅନୁସାରେ, ଆସନ୍ତି ମେଳରେ,
ଡାକିଲେ ମାଳି ସେବକ ।୯ ।

ଭୋଗ, ବସ୍ତ୍ର ଲୋଡ଼ା ହୁଏ ଏଥିରେ
ଭକତ ଯୋଗାନ୍ତି ଯଥା ଶକ୍ତିରେ
କିଛି କରାନ୍ତି ବ୍ରାହ୍ମଣ ଭୋଜନ
ଦକ୍ଷିଣା ମିଳେ ଦେଖି ଯଜମାନ
ଦକ୍ଷିଣା ପାଇ ସେବାସୀ,
ଭକତ କାମନା, ପ୍ରଭୁ କଲେ ଘେନା,
ହୁଅଇ ବହୁତ ଖୁସି ।୧୦।
ଆଉ ପ୍ରକାରେ ଅଭିଷେକ ଅଛି
ତାହା କଥା ଶୁଣ ଭକ୍ତେ କହୁଛି
ଲକ୍ଷ ସଂଖ୍ୟା କରି ବେଲ ପତର
ଅଭିଷେକ ହୁଏ ପ୍ରଭୁଙ୍କ ଶିର
ବହୁ ଫଳ ଦାୟୀ ଇଏ,
ସମସ୍ତ ଇପ୍ସିତ, ଫଳ ହୁଏ ପ୍ରାପ୍ତ,
ଅଭିଷେକ କରେ ଯିଏ ।୧୧।
ମନର କାମନା ପୂରଣ ପାଇଁ
ଅବା ଗ୍ରହ ଦୋଷ ନାଶିବା ପାଇଁ
ଭକତେ ପ୍ରଭୁ ମନ୍ଦିରେ ଆସନ୍ତି
ପ୍ରଭୁ ଚରଣେ ଶରଣ ପଶନ୍ତି
ମନାସନ୍ତି ସଦାଶିବେ,
କାମ ହେବା ପରେ, ପ୍ରଭୁଙ୍କ ଶିରରେ,
ବେଲପତ୍ର ଚଢ଼ାଇବେ ।୧୨।
ସେବାସୀ ଜଣଙ୍କୁ ସାଙ୍ଗରେ ନେଇ
ରସିଦ କାଟନ୍ତି ଅଫିସ ଯାଇ
ଚଢ଼େଇବେ ଲକ୍ଷେ ବେଲ ପତର
ପ୍ରସନ୍ନହୋଇବେ ନିଶ୍ଚେ ଶଙ୍କର
ମୂଲ ନେଇ ମାଳୀମାନେ,
ଜଙ୍ଗଲୁ ଆଣନ୍ତି, ପତର ଗଣନ୍ତି,
ରଖନ୍ତି ନେଇ ମହନେ ।୧୩।
ଚତୁସମ ନୀତି ସରିବା ପରେ
ଓଁ ନମଃ ଶିବାୟ ଗାଇ ମୁଖରେ
ବୋଝରେ ନେଇ କି ବେଲ ପତର
ଦିଅନ୍ତି ପ୍ରଭୁଙ୍କ ଶିର ଉପର
ହୁଅନ୍ତି ତୋଷ ଶଙ୍କର,
କାମନା ଭକ୍ତର, ହୁଅଇ ସଫଳ,
ଦୁଃଖ ଦୂରହୁଏ ତା'ର ।୧୪।



# ବିଂଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରରେ ପାର୍ଶ୍ୱ ଦେବତା ଓ ସେମାନଙ୍କର
ଦର୍ଶନ କ୍ରମ ବର୍ଣ୍ଣନ)

ଲଡୁବାବା ମନ୍ଦିର ପରିସରେ
ରହିଛନ୍ତି ଯେତେ ଯେତେ ଠାକୁରେ
ପ୍ରଭୁଙ୍କ ସାଥିରେ ମନ୍ଦିରେ ବସି
ଉଦ୍ଧାରନ୍ତି ଭକ୍ତେ ଦୁଃଖକୁ ନାଶି
ନିଜ ନିଜ ଭକତର,
ପାପକୁ ଦହନ୍ତି, କଷ୍ଟ ହରୁଛନ୍ତି,
ତ୍ରିତାପ କରନ୍ତି ଦୂର ।୧ ।
ମୁଖ୍ୟ ମନ୍ଦିରର ପଦ୍ମପୃଷ୍ଠରେ
ବାସୁଦେବ ଅଛନ୍ତି ଦକ୍ଷିଣରେ
ତାଙ୍କ ପାଶରେ ପ୍ରଭୁ ଗଜାନନ
ମନ୍ଦିର ବାଡ଼ରେ ଦିଶେ ଶୋଭନ
କାର୍ତ୍ତିକେୟ ପଶ୍ଚିମରେ,
ଦକ୍ଷିଣେ ତଟିନୀ, ମାତା ମନ୍ଦାକିନୀ,
ପାଦୁକ ନଳା ଉପରେ ।୨ ।
ଗଙ୍ଗାଙ୍କ ପୂର୍ବେ ପଦ୍ମ ପୃଷ୍ଠପରେ
ସରସ୍ୱତୀ ଲକ୍ଷ୍ମୀ ଏକା ସାଥିରେ
ଅତି ପାଖରେ ପାଦୁକ ନଳାର
ବସି ଫେଡ଼ନ୍ତି ଯେତେକ ଭକ୍ତର
କଷ୍ଟ, କଳୁଷ ଓ ଦୁଃଖ,
ଅଜ୍ଞାନ ଅନ୍ଧାର, କ୍ଷଣକରେ ଦୂର,
ମା' ଲକ୍ଷ୍ମୀ ଦିଅନ୍ତି ସୁଖ ।୩ ।
ଅଛନ୍ତି ଯେତେ ଦେବତା ବେଢ଼ାରେ
ଦେଖାଇ ଦେବି ଆସ ମୋ ସାଥିରେ
ଦକ୍ଷିଣ ପାର୍ଶ୍ୱରୁ ଆରମ୍ଭ କରି
କହୁଛି ମୁହିଁ ଗୋଟି ଗୋଟି କରି
ଏକାଦଶ ରୁଦ୍ର ଆଗେ,
ଦର୍ଶନେ ତାଙ୍କର, ହୃଦୟରୁ ଡର,
ବାହାରି ଯାଅଇ ବେଗେ ।୪ ।

ଶମ୍ଭୁ ପୀନାକୀ ସ୍ଥାଣୁ ସଦାଶିବ
ଗିରୀଶ ଭର୍ଗ ସର୍ବ ହର ଶିବ
କପାଳୀ ଓ ଭବ ମିଶି ଏଗାର
ଶିବଙ୍କ ଏକାଦଶ ଅବତାର
କଲେ ପାଦରେ ପ୍ରଣାମ,
ପ୍ରାରବ୍ଧ ତୁମରି, ଯିବ ଅପସରି,
ପାଶେ ନ ଆସିବ ଯମ ।୫ ।

ତାଙ୍କ ପାର୍ଶ୍ୱେ ନବ ଦୁର୍ଗା ଅଛନ୍ତି
ମହାଗୌରୀ ମା ପାର୍ବତୀ ଅଟନ୍ତି
ଚନ୍ଦ୍ର ଘଣ୍ଟା କୁଷ୍ମାଣ୍ଡା କାତ୍ୟାୟନୀ
ଶୈଳପୁତ୍ରୀ ମାତା ବ୍ରହ୍ମଚାରିଣୀ
କାଳରାତ୍ରୀ ସିଦ୍ଧିଦାତ୍ରୀ,
ମାତା ସ୍କନ୍ଦମାତା, ମିଶି ନବ ମାତା,
ଭକ୍ତ ପୂଜେ ନବରାତ୍ରୀ ।୬ ।

ତାଙ୍କ ପଶ୍ଚିମକୁ ସୂର୍ଯ୍ୟଙ୍କ ଯନ୍ତ୍ର
ନୀତି ହୁଏ ଏଠି ଗାଇଲେ ମନ୍ତ୍ର
ତାଙ୍କର ପଶ୍ଚିମରେ ବୈଦ୍ୟନାଥ
ରୋଗ ନାଶନେ ସେ ବୈଦ୍ୟଙ୍କ ନାଥ
ଅନ୍ନପୂର୍ଣ୍ଣା ତାହା ପରେ,
ସୁମରିଲେ ନାମ, ସଦା ପୂର୍ଣ୍ଣକାମ,
ଅନ୍ନ ଚିନ୍ତା ନାଶ କରେ ।୭ ।

ଗଣେଶ ସହ ତ୍ରିନାଥ ଠାକୁର
ପଛରେ ଅନ୍ନପୂର୍ଣ୍ଣା ମନ୍ଦିରର
ତାଙ୍କ ପାଖକୁ ନବଗ୍ରହ ଛନ୍ତି
ଭକତର ଗ୍ରହ ପୀଡ଼ା ହରନ୍ତି
ଶନିଙ୍କ ପାଶେ ଭକତ,
ପ୍ରତି ଶନିବାରେ, ତିନୋଟି ସଂଖ୍ୟାରେ,
ଭୋଗ ନେଇ ଉପଗତ ।୮ ।

ଶ୍ରୀକୃଷ୍ଣ ବଉଳ ଗଛ ମୂଳରେ
ତାଙ୍କ ପାଶେ ମାରୁତି ବିକ୍ରମରେ
ତାଙ୍କ ପାଶେ ରାଧା ଯାହାଙ୍କ ପାଦ
ଦେଖନ୍ତି ଭକତେ ହୋଇଣ ମୋଦ
ବନଦୁର୍ଗାଙ୍କ ମନ୍ଦିର,
ପଶ୍ଚିମ ବାଡ଼ରେ, ଦକ୍ଷିଣ କୋଣରେ,
ଦିଶେ ବଡ଼ ମନୋହର ।୯ ।

ତାଙ୍କ ପାଶେ ରାମଶିଳା ଅଛନ୍ତି
ଭକ୍ତେ ଦେଖିଣ ଭକ୍ତିରେ ଛୁଅଁନ୍ତି
ପଶ୍ଚିମ ବାଡ଼ରେ ବେଢ଼ା ଭିତରେ
ଦଶ ମହାବିଦ୍ୟା ଛନ୍ତି ଧାଡ଼ିରେ
ଦିଅନ୍ତି ଆଶିଷ ଭକ୍ତେ,
ଦଶ ଅବତାର, ଭଗବତୀଙ୍କର,
ପୂଜିଲେ ତାନ୍ତ୍ରିକ ମତେ ।୧୦।

କାଳୀ ତାରାମାତା ଭୁବନେଶ୍ୱରୀ
ଭୈରବୀ ମାତା ତ୍ରିପୁର ସୁନ୍ଦରୀ
ଛିନ୍ନମସ୍ତା ଓ ମାତା ଧୂମାବତୀ
ବଗଳାମୁଖୀଙ୍କୁ କରେ ପ୍ରଣତୀ
ମାତଙ୍ଗୀ କମଳା ମାତା,
ମିଶି କରି ଦଶ, ମାତାଏ ପ୍ରକାଶ,
ଭକ୍ତେ ଦ୍ୟନ୍ତି ସଫଳତା ।୧୧।

ପଶ୍ଚିମ ବେଢ଼ାରେ କୂଅ ପାଖରେ
ପଞ୍ଚଦେବତା ଅଛନ୍ତି ବାଡ଼ରେ
ଗଣେଶଙ୍କ ସହିତ ନାରାୟଣ
ରୁଦ୍ର ଅମ୍ବିକା ଭାସ୍କର ମିଶିଣ
ସମନ୍ୱୟର ଦର୍ଶନ,
ପୂଜନ୍ତି ଭକତେ, ନିଜ ସାଧ ମତେ,
ଯା'ର ଯେହ୍ନେ ଦୃଷ୍ଟି କୋଣ ।୧୨।

କୂଅ ପାଖରେ ଉତ୍ତର ବେଢ଼ାର
ବସିଛନ୍ତି ଶୋହେ ଦଶାବତାର
ମତ୍ସ୍ୟ କଚ୍ଛପ ବାମନ ବରାହ
ପର୍ଶୁରାମ ରାମ ପ୍ରଭୁ ନୃସିଂହ
କଳ୍କୀ ବୁଦ୍ଧ ବଳରାମ,
କରନ୍ତି ପାଳନ, ପ୍ରଭୁ ନାରାୟଣ,
ପଦରେ କରେ ପ୍ରଣାମ ।୧୩।

ନବ ଶକତି ଅଛନ୍ତି ଆଗକୁ
ବେଢ଼ାରେ ଗଲେ ଟିକିଏ ପୂର୍ବକୁ
ରହି କରି ନିଜ ନିଜ ମୁଦ୍ରାରେ
ବର ଦିଅନ୍ତି ଆନନ୍ଦେ ଭକ୍ତରେ
ନବରୂପ ମାତାଙ୍କର,
ଭକତ ମଧରେ, କୃପା ବାଣ୍ଟିବାରେ,
ହୋଇଥାନ୍ତି ଆଗୁସାର ।୧୪।

ବିମଳା ଦୁର୍ଗା ଚାମୁଣ୍ଡା ଇନ୍ଦ୍ରାଣୀ
ବରାହୀ କୌମାରୀ ମାତା ବ୍ରାହ୍ମଣୀ
ବୈଷ୍ଣବୀ ରୁଦ୍ରାଣୀ ସିଦ୍ଧି ଦିଅନ୍ତି
ସାଧନା ତାଙ୍କର ଯିଏ କରନ୍ତି ·
କୋମଳ ହୃଦୟା ମାତେ,
ପାପ ବିନାଶିନୀ, ଅଭୟ ଦାୟିନୀ,
ଉଦ୍ଧାର କର ମା' ମୋତେ ।୧୫।

ତାଙ୍କ ପାଶେ ଛନ୍ତି ମାତା ତାରିଣୀ
ବିପଦ ହାରିଣୀ ଦୁଃଖ ନାଶିନୀ
ଦେଖ ମାତା ଷଷ୍ଠୀ ତାଙ୍କରି ପାଶେ
ବାତ୍ସଲ୍ୟ ମମତା ମୁଖୁ ପ୍ରକାଶେ
ମାତା ମଙ୍ଗଳ କାରିଣୀ,
କଷ୍ଟ ନିବାରିଣୀ, ସଙ୍କଟ ମୋଚନୀ,
ଶିଶୁଙ୍କ ରକ୍ଷା କାରିଣୀ ।୧୬।

ତାଙ୍କ ପୂର୍ବକୁ ଅଛନ୍ତି ସାବିତ୍ରୀ
ସଂସାରେ ବିରଳ ସେପରି ସତୀ
ମାତା ମଙ୍ଗଳା ତାଙ୍କର ପାର୍ଶ୍ୱରେ
ମହାମାୟୀ ବିଜେଛନ୍ତି ସାଥିରେ
ଭକତ ଦୁଃଖ ହାରିଣୀ,
ସେହି ଭଗବତୀ, ସେହି ମା ପାର୍ବତୀ,
ଭକତ କ୍ଲେଶ ନାଶିନୀ ।୧୭।

ଦୁର୍ଗାମାଧବ ତାଙ୍କର ପୂର୍ବକୁ
ଆଶୀର୍ବାଦ ଦେଇ ଥାନ୍ତି ଭକ୍ତକୁ
ଲକ୍ଷ୍ମୀ ନୃସିଂହ ପାର୍ଶ୍ୱରେ ଅଛନ୍ତି
ଭକ୍ତକୁ ତତ୍‌କ୍ଷଣେ ସୁରକ୍ଷା ଦ୍ୟନ୍ତି
ବିଶ୍ୱକର୍ମା ଛନ୍ତି ପାଶେ,
ଦେବ କାରିଗର, ଯନ୍ତ୍ରୀଙ୍କ ଈଶ୍ୱର,
ସୁନ୍ଦର ସ୍ୱରୂପ ଦିଶେ ।୧୮।

ମାତା ପାର୍ବତୀ ମନ୍ଦିର ଆଗରେ
କାମଧେନୁ ଛନ୍ତି ପୂର୍ବ ଦିଗରେ
ଭକତ କାମନା ପୂର୍ଣ୍ଣ କରନ୍ତି
ଭକତ ଯା କିଛି ମନରେ ଚିନ୍ତି
ପାର୍ଶ୍ୱେ ଆନନ୍ଦ ବଜାର,
ଭକତେ ବସିଣ, ପ୍ରସାଦ ସାରିଣ,
ଯାଆନ୍ତି ନିଜର ପୁର ।୧୯।

ଐଶାନ୍ୟ କୋଣେ ବାବା ମନ୍ଦିରର
ଆସ୍ଥାନ ଅଛି ପାର୍ବତୀ ମାଆର
ନୟାଗଡ଼ ରାଜାଙ୍କର ଏ କୀର୍ତ୍ତି
ସୁଦୃଶ୍ୟ ପୁଣି ସୁନ୍ଦର ଆକୃତି
ମାତା ଜଗତ ଜନନୀ,
ସମସ୍ତ ସଂସାର, ତା' ରୂପ ମାତର,
ତାକୁ ପାରେ ବୁଝି ଜ୍ଞାନୀ ।୨୦।
ମାଆଙ୍କର ମନ୍ଦିରରୁ ବାହାରି
ଉତ୍ତର ପାର୍ଶ୍ୱେ ଗଲେ ଚାଲି କରି
ପଶ୍ଚିମକୁ ଛନ୍ତି ଅଞ୍ଜନା ସୁତ
ସଙ୍କଟ ମୋଚନ ଶ୍ରୀହନୁମନ୍ତ
ସିନ୍ଦୁର ବୋଳା ଶରୀର,
ଶ୍ରୀରାମଙ୍କ ଦୂତ, ଫେଡ଼ନ୍ତି ଆରତ,
ଯେତେ ଅଛି ଭକତର ।୨୧।
ତାଙ୍କ ପଶ୍ଚିମକୁ ସମଲେଶ୍ୱରୀ
ସଙ୍କଟ ହାରିଣୀ ଭୁବନେଶ୍ୱରୀ
ପଶ୍ଚିମ ପାର୍ଶ୍ୱରେ ଆଗକୁ ଗଲେ
ବିନାୟକ ଛନ୍ତି ସିନ୍ଦୁର ଭାଲେ
ଗଣେଶ ବିଘ୍ନନାଶକ,
ପ୍ରଭୁ ଗଜାନନ, ସଙ୍କଟ ନାଶନ,
ବିଦ୍ୟା ବୁଦ୍ଧି ପ୍ରଦାୟକ ।୨୨।
ତୁଳସୀ ମାତା ସମ୍ମୁଖେ ଅଛନ୍ତି
ବିଷ୍ଣୁପ୍ରିୟା ତାଙ୍କ ଶିରେ ଶୋଭନ୍ତି
ପାଖରେ ପଞ୍ଚମୁଖୀ ହନୁମାନ
ଦକ୍ଷିଣେ ଚାହିଁ, ଛନ୍ତି ବିଦ୍ୟମାନ
ଅଷ୍ଟ ସିଦ୍ଧି ନବ ନିଧି,
ଦେଇ ଭକତକୁ, ତାରନ୍ତି ତାହାକୁ,
ଦିଅନ୍ତି ସୁଖ ବାରିଧି ।୨୩।
ହାତୀ ଦ୍ୱାର ଡେ଼ଇଁ ଗଲେ ଆଗକୁ
ଦେଖିବ ରାମ ଲକ୍ଷ୍ମଣ ସୀତାଙ୍କୁ
ମରୁତ ନନ୍ଦନ ଯୋଡ଼ ହସ୍ତରେ
ରହିଛନ୍ତି ତାଙ୍କ ପାଦ ପାଶରେ
ଧରିଲେ ନାମ ତାଙ୍କର,
କୃପା ପାରାବାର, ସଂସାର ସାଗର,
ଭକ୍ତକୁ କରନ୍ତି ପାର ।୨୪।

ପଶ୍ଚିମକୁ ଗଲେ ଟିକେ ଆଗକୁ
ଦେଖିବ ନବଗୁଞ୍ଜର ରୂପକୁ
କୃଷ୍ଣ ମହାପ୍ରଭୁ ଅର୍ଜୁନ ତୁଲେ
ଏ ରୂପକୁ ଗ୍ରହଣ କରିଥିଲେ
ବିସ୍ମୟକାରୀ ଶରୀର,
ଦେଖିଲେ ଭକତ, ହୁଏ ବିମୋହିତ,
ପ୍ରଭୁ ପ୍ରେମରେ ବିଭୋର ।୨୫ ।

ସ୍ନାନବେଦୀ ପାଶେ ଲକ୍ଷ୍ମୀ ମନ୍ଦିର
ଐଶ୍ୱର୍ଯ୍ୟ ଦାୟିନୀ ଶ୍ରୀ ସଂସାରର
ଜଗନ୍ମାତା ବିଷ୍ଣୁଙ୍କର ଘରଣୀ
କନକ ବର୍ଣ୍ଣା ସାଗର ଦୁଲଣୀ
ପୂଜିଲେ ପାଦେ ତାଙ୍କର,
ଦୁର୍ଭାଗ୍ୟ କଟଇ, ସଂପଦ ମିଳଇ,
ବିଜୟ ହୁଏ ଭକ୍ତର ।୨୬ ।

ଦକ୍ଷିଣେ ଅଛନ୍ତି ନୀଳାଦ୍ରିନାଥ
ଭାଇଭଗ୍ନୀ ଘେନି ଜଗତନାଥ
ଜଗତ କରତା ଆର୍ତ୍ତନାଶନ
ପାପ ହରତା ପତିତ ପାବନ
ଭକ୍ତିରେ କଲେ ପ୍ରଣାମ,
ପ୍ରାରବ୍ଧ କଟଇ, ଆଶିଷ ମିଳଇ,
ତୁଟିଯାଏ ସବୁ ଭ୍ରମ ।୨୭ ।

ପଶ୍ଚାତ ଦେଶେ ପଶ୍ଚିମ ଦିଗରେ
ଅର୍ଦ୍ଧନାରୀଶ୍ୱର ଉତ୍ତର କରେ
ସ୍ନାନବେଦୀକୁ ଲାଗି ରହିଛନ୍ତି
ଭକତଜନଙ୍କ ମନ ହରନ୍ତି
ବାମେ ଶିବା ଦକ୍ଷେ ଶିବ,
ତାହାଙ୍କର ରୂପ, ସଂସାର ସ୍ୱରୂପ,
ତତ୍ତ୍ୱଜ୍ଞାନୀ ହିଁ ଜାଣିବ ।୨୮ ।

ଦକ୍ଷିଣକୁ ବାମି ଉତ୍ତର ଦିଶେ
ସନ୍ତୋଷୀ ମାତା ମନ୍ଦିର ପ୍ରକାଶେ
ମାତା ସନ୍ତୋଷୀ ସନ୍ତୋଷ ଦାୟିନୀ
ଜଗତ ମାତା ସେ ଜଗନ୍ମୋହିନୀ
ଶୁକ୍ରବାରେ ତାଙ୍କ ବ୍ରତ,
କରେ ଯେ ଭକତ, ଶୁଣି ତା' ଆରତ,
ଉଦ୍ଧାରନ୍ତି ତା'ରେ ମାତ ।୨୯ ।

ଲଡ୍ଡୁବାବାଙ୍କର ଦର୍ଶନ ସାରି
ବେଢ଼ା ଦେବତାଙ୍କୁ ପ୍ରଣାମ କରି
ଆଉ ଯେତେ ଦେବ ଦେବୀ ଅଛନ୍ତି
ସମସ୍ତଙ୍କ ପାଦେ ଯେ ପ୍ରଣମନ୍ତି
ସବୁ କଲ୍ମଶ ତାଙ୍କର,
ଦୂର ହୋଇ ଯାଏ, ଦେବାଶିଷ ପାଏ,
ପାପ ତା ହରନ୍ତି ହର ।୩୦।

ମନରେ ଭକତି ଭାବନା ନେଇ
ଏକ ଏକ ପ୍ରଭୁଙ୍କ ପାଶେ ଯାଇ
ଉପଯୁକ୍ତ ଭାବେ ଗନ୍ଧ ଚନ୍ଦନେ
ଆରାଧନା କରିଲେ ଶୁଦ୍ଧ ମନେ
ମନରେ ବାଞ୍ଛିତ ଫଳ,
କରନ୍ତି ପ୍ରଦାନ, ନାଶନ୍ତି କଷଣ,
ଖଣ୍ଡି ପ୍ରାରବ୍ଧ ସକଳ ।୩୧।





# ଏକବିଂଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରରେ ଗୁହାରି ଜଣେଇବାକୁ ଆସି ଅଧିଆ
ପଡୁଥିବା ଗୁହାରିଆ ଚରିତ ବର୍ଣ୍ଣନ)

ଅକର୍ମ କର୍ମଦାୟକ ଶଙ୍କର
ଆଶୁତୋଷ ତୋଷ ମନ ତାଙ୍କର
ଭକତର ଅଳ୍ପ ଦେଖିଲେ କଷ୍ଟ
ଡେରି ନ କରି ହୁଅନ୍ତି ସନ୍ତୁଷ୍ଟ
ଭକ୍ତଭାବ ଦେଖି ଖୁସି,
ଇପସିତ ବର, ଦ୍ୟନ୍ତି ମହେଶ୍ୱର,
ନନ୍ଦୀ ପରେ ବସି ଆସି ।୧ ।
ଭକ୍ତର କଷ୍ଟ ସହି ନ ପାରନ୍ତି
କଷ୍ଟ ସହି ଯେଉଁ ଭକ୍ତ ଡାକନ୍ତି
ବରଷି ତାପରେ କରୁଣା ବାରି
ସବୁ କଷ୍ଟ ତା ଦିଅନ୍ତି ନିବାରି
ତ୍ରିତାପରୁ ଉଦ୍ଧାରଇ,
ଫଳ ପୁଷ୍ପ ନେଇ, ବେଲ ପତ୍ର ଦେଇ,
ପାଦ ପଦ୍ମେ ଯେ ପୂଜଇ ।୨ ।
ଅଭିଷ୍ଟ ସିଦ୍ଧି ନିମନ୍ତେ ନିଜର
ଭକ୍ତ ଆସି ଲଡୁବାବା ମନ୍ଦିର
ମାଳି ସେବକ ଯଜମାନ ହୋଇ
ମନ୍ଦିରେ ରୁହେ ନ ଖାଇ ନ ପିଇ
ଏକ ନିଷ୍ଠ ଏକ ବ୍ରତେ,
ମାଆଙ୍କ ମନ୍ଦିରେ, ବସିଣ ଧ୍ୟାନରେ,
ପ୍ରଭୁ ରୂପ ଚିନ୍ତି ଚିତ୍ତେ ।୩ ।
ଅଧିଆ ପଡ଼ଇ ଆସି ମନ୍ଦିରେ
କଷ୍ଟ ଦିଏ ନିଜେ ନିଜ ଶରୀରେ
ଦୃଢ଼ତାର ସହ ରହିଲେ ସ୍ଥିର
ଲଡୁକେଶ୍ୱର ହୁଅନ୍ତି ଅସ୍ଥିର
ସ୍ୱପ୍ନରେ ଦେଖା ଦିଅନ୍ତି,
ଭକ୍ତ ମନ ଜାଣି, ସେ ତ୍ରିଶୂଳ ପାଣି,
ମନ କାମନା ପୂରାନ୍ତି ।୪ ।

ଉପବାସ ରହି ଏହି ପ୍ରକାର
ନିଷ୍ଠାର ସହିତ ଭକତ ବର
ମନ କାମନା ପୂରଣ ନିମନ୍ତେ
ଜିଦି କରି ମରିବା ପରିଯନ୍ତେ
ଗୁହାରି କରିବା ପାଇଁ,
ଆସେ ଯେଉଁ ଭକ୍ତ, ଲଡ୍ଡୁବାବା କ୍ଷେତ୍ର,
ଗୁହାରିଆ ଭକ୍ତ ସେଇ ।୫ ।
ମାଳି ସେବକ ଯା' ହେପାଜତରେ
ଗୁହାରିଆ ଆସିଥାଏ ମନ୍ଦିରେ
ସମସ୍ତ ଦାୟିତ୍ୱ ସିଏ ବୁଝନ୍ତି
ତାଙ୍କ ନିଷ୍ଠା ବି ପ୍ରଭୁ ପରଖନ୍ତି
ପରାକାଷ୍ଠା ଦୁହିଁଙ୍କର,
ହୁଏ ପ୍ରମାଣିତ, ହେଲେ ବରପ୍ରାପ୍ତ,
ଯଜମାନ ସେବକର ।୬ ।
ସେବକ ଜଣାଏ ପ୍ରଭୁ ପୟରେ
ଯଜମାନର ଦୁଃଖକୁ ସଧିରେ
କଷ୍ଟି ଆତୁରେ ତା' କଷ୍ଟ ଜଣାଏ
ପାଦୁକ ବା ପଣା ପିଇ ଟିକିଏ
ମାତ୍ର ଥରଟେ ଦିନରେ,
ଏକ ନିଷ୍ଠ ହୋଇ, ପ୍ରଭୁଙ୍କୁ ଡାକଇ,
ରଖ ପ୍ରଭୁ ରଖ ବାରେ ।୭ ।
ଗୁହାରିଆ ସକାମ ନିବେଦନ
ଲଡ୍ଡୁକେଶ୍ୱର କରିଲେ ଗ୍ରହଣ
ମନ ଜାଣି ତାକୁ ଦିଅନ୍ତି ବର
ଗୁହାରିଆ ଉଠେ ଖୁସି ମନର
ସେବକକୁ ଜଣାଇଣ,
ବ୍ରତ ଭାଙ୍ଗି ତା'ର, ଯାଏ ନିଜ ପୁର,
ପ୍ରଭୁଙ୍କୁ କରି ଦର୍ଶନ ।୮ ।
ଗୁହାରିଆ ଜଣେ ଭକ୍ତି ନିଷ୍ଠାରେ
ପଡ଼ି ଗୁହାରିଆ ଆସି ମନ୍ଦିରେ
ବରପ୍ରାପ୍ତ କଲେ ସଫଳ ହୋଇ
ଗୁହାରିଆ ଉଠିବା ତାରେ କହି
ଅଧିଆ ପଡ଼ନ୍ତି ଆସି,
ଚାହେଁ ଯିଏ ଧନ, ଅବା ଚାହେଁ ଜ୍ଞାନ,
ଯେତେ ସନ୍ତାନ ପ୍ରତ୍ୟାଶୀ ।୯ ।

ଗୁହାରିଆ ପଡ଼ି ଏହି ମନ୍ଦିରେ
ମନସ୍କାମନା ପୂର୍ଣ୍ଣ ହେବା ପରେ
ଭକତେ ଯାଚି ଦିଅନ୍ତି ବିଭିନ୍ନ
ପ୍ରଭୁଙ୍କ ମନ ଲାଖି ଦ୍ରବ୍ୟମାନ
ସୁନା, ଜମି, ନାଗ, ଗରା,
ଅନାଦି କାଳରୁ, ଭକ୍ତଙ୍କ ପକ୍ଷରୁ,
ସେବକ ମାନଙ୍କ ଦ୍ୱାରା ।୧୦।
ଗଞ୍ଜାମ ଜିଲ୍ଲାରେ ଜମି ଯେତକ
ରହିଅଛି ନାମେ ଲଡୁବାବାଙ୍କ
ଦେଇ ଅଛନ୍ତି ଗୁହାରିଆମାନେ
ଶ୍ରୀଲଡୁକେଶ୍ୱର ପ୍ରଭୁଙ୍କୁ ଦାନେ
ଚାଷ କରନ୍ତି ସେମାନେ,
ଅମଳ ଋତୁରେ, ସଂଗ୍ରହର ପରେ,
ଦିଅନ୍ତି ଅଜ୍ଞା ପ୍ରମାଣେ ।୧୧।
କିଏ ଗଳା କାଟି କେ ତଣ୍ଟି କାଟି
ଅଧିଆ ପଡ଼େ କିଏ ଅଣ୍ଡ କାଟି
ପଡ଼ିଥିବା ଗୁହାରିଆ ମଧରୁ
ଫେରନ୍ତି ସୁସ୍ଥ ହୋଇଣ ଏଠାରୁ
ଏ କଥା ଦେଖା ଯାଇଛି,
ଶ୍ରୀଲଡୁକେଶ୍ୱର, ପ୍ରଭୁ ମହେଶ୍ୱର,
ମହିମା ବିକାଶି ଅଛି ।୧୨।
ସାତ ଦିନେ କିଏ ଏଗାର ଦିନେ
ଉଠନ୍ତି କେତେ ଏକୋଇଶ ଦିନେ
ଆଜି ଯାଏଁ କେହି ବିଫଳ ହୋଇ
ଏହି ମନ୍ଦିରୁ କେବେ ଫେରି ନାଇଁ
ସେବକମାନେ କହନ୍ତି,
ବାବାଙ୍କର ବାବା, ପ୍ରଭୁ ଲଡୁବାବା,
କୃପା ନିଶ୍ଚୟ କରନ୍ତି ।୧୩।
ଶରଣକୂଳରେ କରିଛି ବାସ
ସଂସାରେ ବିକାଶେ ତାଙ୍କ ସୁବାସ
ଯୁଗ ଯୁଗରୁ କେତେ ଯୋଗୀ ମୁନି
ଗାଇ ଅଛନ୍ତି ତାହାର କାହାଣୀ
ତା ପାଇଁ ମାଟିଏହାର,
ହୋଇଛି ପବିତ୍ର, ସ୍ୱରୂପ ତା ପୁତ,
ପାଦେ ନମେ ମୁଁ ତାହାର ।୧୪।

କର୍ପୁର ଗୌର ବରନ ତାଙ୍କର
କରୁଣାର ଅଟନ୍ତି ଅବତାର
ଚରାଚର ସଂସାରର ସେ ସାର
ଗଳେ ଶୋହେ ଭୂଜଙ୍ଗେନ୍ଦ୍ରର ହାର
ହୃଦୟେ ସଦା ବସନ୍ତୁ,
ଭବ ଓ ଭବାନୀ, ଶିବ ଓ ଶିବାନୀ,
ପାଦେ ନମେ ଉଦ୍ଧାରନ୍ତୁ । ୧୫ ।





# ଦ୍ୱାବିଂଶ ପ୍ରକାଶ

(ବାବା ଲଡୁକେଶ୍ୱର ଓ ମାତା ପାର୍ବତୀଙ୍କ ବ୍ରହ୍ମାଦ୍ରି କ୍ଷେତ୍ର ଓ ଦ୍ୱିତୀୟ ଶ୍ରୀକ୍ଷେତ୍ର ଭ୍ରମଣ ଏବଂ ବନ ବିହାର)

ଶୁଣ ସୁଜନେ ଏ ଅପୂର୍ବ ରସ
ଦିନେ ପାର୍ବତୀ ଡାକି ଶିବେ ପାଶ
ବୋଲନ୍ତି ଲଡୁବାବା ଚାଲ ଯିବା
ଚିତ୍ରୋତ୍ପଳାରେ ସ୍ନାହାନ କରିବା
ବ୍ରହ୍ମାଦ୍ରୀ ପାହାଡ଼ କୋଳେ,
ଶ୍ରୀନୀଳମାଧବେ, ଅରଚିବା ଭାବେ,
ଦର୍ଶନ କରିବା ଡୋଳେ ।୧ ।
ବନ ବିହାର କରିବା ସୁମନେ
କାଳ କାଟିବା କ୍ଷଣେ ନିକାଞ୍ଚନେ
ପ୍ରକୃତି କୋଳେ ବୃକ୍ଷଲତା ମେଳେ
ଘଡ଼ିଏ ରହି ଫେରିବା ନିରୋଳେ
ଶୁଣିବା ବା ହୋଇ ଖୁସି,
ନନ୍ଦିକୁ ଡକାଇ, ଯାତ୍ରାରମ୍ଭ ପାଇଁ,
ବାହାରିଲେ ଉମା ସାଇଁ ।୨ ।
ଭଣ୍ଡାର ଶୈଳ ଶୋଭାର ଆକର
ପଶୁପକ୍ଷୀ ତରୁଲତାଙ୍କ ଘର
ଲଡୁବାବା ପ୍ରତାପେ ନିର୍ଭୟରେ
ବିଚରନ୍ତି ପ୍ରାଣୀଏ ଆନନ୍ଦରେ
ପ୍ରଭୁଙ୍କର ଯାତ୍ରା ଜାଣି,
ସର୍ବେମେଳ ହୋଇ, ମାତା ପାଶେ ଯାଇ,
ଜଣାଇଲେ ମନ ବାଣୀ ।୩ ।
ମାତେ ଆମ୍ଭେ ଭଣ୍ଡାର ପର୍ବତରେ
ବିଚରୁ ନିଛନ୍ଦେ ବିନା ଭୟରେ
ତୁମ୍ଭ ଛତ୍ରଛାୟା ତଳେ ରହିଛୁ
ନିର୍ଦ୍ୱନ୍ଦ୍ୱେ ଆନନ୍ଦ ମନେ ବଞ୍ଚିଛୁ
ତୁମ୍ଭ ଅନୁପସ୍ଥିତିରେ,
କେମନ୍ତେ ବଞ୍ଚିବୁ, ସୁରକ୍ଷା ଲଭିବୁ,
ରହିବୁ କା' ଆଶ୍ରୟରେ ।୪ ।

ମଣିଷ ଜାତି ବଡ଼ ସ୍ୱାର୍ଥପର
ପଶୁପକ୍ଷୀ ବୃକ୍ଷ କରେ ସଂହାର
ନିଜସ୍ୱାର୍ଥ ପାଇଁ ସବୁ ନାଶଇ
ପ୍ରକୃତି ଚିନ୍ତା ମନେ ନ ହେଜଇ
କାନ୍ଦେ କୁମ୍ଭୀର କାନ୍ଦଣା,
ଜଗତ ଜନନୀ, ନିବେଦନ ଘେନି,
ଆମ୍ଭଙ୍କୁ ପର କରନା ।୫ ।
ଶୁଣି ଜଗନ୍ମାତା ହୋଇଲେ ବ୍ୟସ୍ତ
ଆକୁଳ ପ୍ରାର୍ଥନା କଲା ବ୍ୟଥିତ
ସହଜ ବାତ୍ସଲ୍ୟ ପ୍ରେମେ ଉଦ୍‌ବୁଦ୍ଧ
ବୋଇଲେ ପ୍ରାଣୀ କରିବ ଯେ ବଧ
ଭଣ୍ଡାର ବନକୁ ଆସି,
ସର୍ପାଘାତେ ପ୍ରାଣ, ନେବ ତା ଶମନ,
ରୁହ ତୁମ୍ଭେ ହୋଇ ଖୁସି ।୬ ।
ମାତାଙ୍କ ବାକ୍ୟ ଲଡୁବାବା ଶୁଣି
ବୋଲନ୍ତି ଧନ୍ୟ ହେ ତୁମ୍ଭେ କଲ୍ୟାଣୀ
ସଂସାର ଚିନ୍ତା ସଦା ତୁମ୍ଭ ମନେ
ନନ୍ଦି ଭୃଙ୍ଗି ଜଗାଇବା ଏ ସ୍ଥାନେ
ବନକୁ ଆସିବ ଯିଏ,
ଶାପ କଥା କହି, ସୁରକ୍ଷାରେ ରହି,
ସୂଚନା ଦେବେ ଯେ ସିଏ ।୭ ।
ମାତା ସହ ପ୍ରଭୁ ଲଡୁକେଶ୍ୱର
ସିଂହ ପୃଷ୍ଠେ ଗଲେ ଦିଗ ଉତ୍ତର
ଚିତ୍ରୋତ୍ପଳା କୂଳେ ହେଲେ ପ୍ରବେଶ
ସ୍ନାନ କରି ଦୁହେଁ ହୋଇ ସୁବେଶ
ଆନନ୍ଦ ମନରେ ଯାଇ,
ବ୍ରହ୍ମାଦ୍ରୀ ଶିଖରେ, ପର୍ବତ କ୍ରୋଟରେ,
ପ୍ରବେଶିଲେ ନାମଧାୟୀ ।୮ ।
ଶ୍ରୀଜଗନ୍ନାଥ ବ୍ରହ୍ମାଣ୍ଡ କରତା
ନୀଳମାଧବ ସେ ଆଦି ଦେବତା
ପଦୁ ଝରଇ ଯା'ର ମନ୍ଦାକିନୀ
ପଦରେ ତା ଶିବ ସ୍କନ୍ଦ ଜନନୀ
ପ୍ରଣାମିଣ ହୃଷ୍ଟ ଚିତ୍ତେ,
ଶୋଭା ସେବନର, ଦେଖି ନୟନର,
ହର୍ଷିତ ହୋଇଲେ ଚିତ୍ତେ ।୯ ।

ଏକାନ୍ତେ ବସି ଦୁହେଁ ତରୁ ତଳେ
ଶିର ରଖି ଶିବ ପାର୍ବତୀ କୋଳେ
ପୂର୍ଣ୍ଣଗର୍ଭା ଚିତ୍ରୋତ୍ପଳାକୁ ଦେଖି
ନୈସର୍ଗିକ ସୌନ୍ଦର୍ଯ୍ୟତା ପରଖି
କୁସୁମୀ ମିଳନ ସ୍ଥଳ,
ମନକୁ ମୋହଇ, ଆନନ୍ଦ ଭରଇ,
ତୃଷାର୍ତ୍ତେ ଯେସନ ଜଳ ।୧୦।
ମାତା ଉତ୍କଳ ଗଙ୍ଗା ଏହି କାଳେ
ଲାସ୍ୟମୟୀ ସ୍ୱରୂପ ଅବହେଳେ
ଧାରଣ କରି ହୋଇ ଉପସ୍ଥିତ
କହିଲେ ହେ ପ୍ରଭୁ ନୀଳଲୋହିତ
ଦିଅ ସୁଯୋଗ ସେବାର,
ପ୍ରଭୁ ସଦାଶିବ, ହୋଇ ଅତି ମୋଦ,
ବୋଲନ୍ତି ଶୁଣ ମୋ ଗୀର ।୧୧।
ଶ୍ରାବଣ ମାସରେ ଭକତେ ନେଇ
ଢାଳିବେ ତୋ ନୀର ମୋ ଶିରେ ଯାଇ
ପାଦେ ଚାଲି ରହି ପୂର୍ଣ୍ଣ ନିଷ୍ଠାରେ
ପାଇବୁ ସାନିଧ ମୋର ସେଠାରେ
ତହିଁ ଉତ୍ତାରୁ ଶଙ୍କର,
ପାର୍ବତୀଙ୍କୁ ଧରି, ତ୍ରିପୁରାନ୍ତକାରୀ,
ଚଢ଼ିଲେ ସିଂହ ଉପର ।୧୨।
ପୁଣ୍ୟ ସଲିଳା କୁସୁମୀ ଶୁଳିଆ
ଦୁଆଷ୍ଟ ଲୁଣି ଝରା କୁଆଁରିଆ
ବୃତ୍ତଙ୍ଗ ବାଘମାରୀ ମନ୍ଦାକିନୀ
ଡ଼ାହୁକା ଆଦି ଯେତେ ସ୍ରୋତସ୍ୱୀନୀ
ଦର୍ଶନେ ହୋଇଲେ ତୋଷ,
ଭଗିନୀଙ୍କୁ ଦେଖି, ଉମାମନେ ସୁଖି,
ହୃଦେ ବହିଲେ ସନ୍ତୋଷ ।୧୩।
ଗୋସିଂହ ପର୍ବତ ସାନ ହାମରା
ରାଜଗିରୀ ଗୋଛା ବଡ଼ ହାମରା
ପୂର୍ଣ୍ଣମାସୀ ମଣିଭଦ୍ରା ପର୍ବତ
ମଧୁକର୍ଣ୍ଣିକା ରାସୋଳ ସହିତ
ବିହାର କରି ସୁମନେ,
ପ୍ରକୃତି ରାଣୀର, ରୂପକୁ ସୁନ୍ଦର,
ନିରେଖିଲେ ସ୍ୱନୟନେ ।୧୪।

ଚକାପଥର ଓ ଟାକରା ଖାଇ
ଧରି ମୁଣ୍ଡିଆ ପୁଣି ଘଣ୍ଟୁଲେଇ
ପଞ୍ଚୁପାଣ୍ଡବ ଋଷି ବଳରାମ
ଶୁଳିଆ ଦିଶେ ଅତି ମନୋରମ
ବନେ ବନେ ବିହରିଣ,
ବନ୍ୟ ପଶୁପକ୍ଷୀ, ଗଣେ ପାଶୁ ଦେଖି,
ଚଳିଲେ ଅତ୍ରି କ୍ଷେତ୍ରେଣ ।୧୫ ।

ଗୟଳସିଂହ ଦିଶଇ ସୁନ୍ଦର
ସୌନ୍ଦର୍ଯ୍ୟର ଅଟଇ ଗନ୍ତାଘର
ଯେହ୍ନେ ଗଜରାଜ ଶୁଣ୍ଢ ଲମ୍ବାଇ
ଶୋଇ ରହିଛି ସେପରି ଦିଶଇ
ପାଶରେ ଅତ୍ରି ଆଶ୍ରମ,
ପ୍ରଭୁ ରଘୁପତି, ପୂଜା ପାଉଛନ୍ତି,
ଶୋଭା ତାଙ୍କ ମନୋରମ ।୧୬ ।

ଉତ୍ତର ଦିଗରେ ପର୍ବତ ପାଶେ
ଦ୍ୱିତୀୟ ଶ୍ରୀକ୍ଷେତ୍ର ନାମ ପ୍ରକାଶେ
ଭ୍ରାତା ପତ୍ନୀ ଘେନି ପ୍ରଭୁ ଶ୍ରୀରାମ
ବିଜୟ ଦୃଶ୍ୟ ଅଟେ ଅନୁପମ
ଓଁ ରାମାୟ ମନ୍ତ୍ର ଜପି,
ମାତା ଆଦ୍ୟାଶକ୍ତି, କଇଳାସ ପତି,
ନମିଲେ ଚିତ୍ତ ସମର୍ପି ।୧୭ ।

ପ୍ରଭୁଙ୍କ ପାଶରୁ ହୋଇ ଅନ୍ତର
ଦକ୍ଷିଣ ଦିଗକୁ ଚଳିଣ ଧିର
ରତ୍ନମାଳା ବାଣିଝାରି ଦେଖିଲେ
ବନ୍ୟଜୀବମାନେ ନିର୍ଭୟେ ଥିଲେ
ପାର୍ବତୀ ଲଡୁକେଶ୍ୱର,
ଶ୍ରୀ ଦଧିବାମନ, ଚରଣ ବନ୍ଦନ,
କରି ଫେରିଲେ ମନ୍ଦିର ।୧୮ ।

କୋଳ କରି ମାତାଙ୍କୁ ମହେଶ୍ୱର
ଚକ୍ଷୁରେ ଚକ୍ଷୁ ମିଶାଇ ନିଜର
ପୁଛିଲେ ଖୁସି ହୋଇଲାକି ମନ
ଭ୍ରମଣ କରିଲ ବନ କାନନ
ଗାଢ଼େ ଆଲିଙ୍ଗି ପାର୍ବତୀ,
ପ୍ରଭୁ ହେଲି ଧନ୍ୟ, ଧନ୍ୟ ମୋ ଜୀବନ,
ଆନନ୍ଦେ ଉମା ବୋଲନ୍ତି ।୧୯ ।

ଯୋଗୀ ଚଳିଲେ ଗମ୍ଭୀରା ମଧକୁ
ପାର୍ବତୀ ଚଳିଲେ ଅନ୍ତଃପୁରକୁ
ଭଣ୍ଡାର କ୍ଷେତ୍ରେ ସର୍ବ ଜୀବମାନେ
ଖୁସି ହେଲେ ପ୍ରଭୁଙ୍କ ଆଗମନେ
ଆଗମନୀର ସଙ୍ଗୀତ,
ବାତ ଗାଏ ସ୍ୱରେ, ପକ୍ଷୀ କାକଳୀରେ,
ଚଉଦିଗ ମୁଖରିତ ।୨୦।





# ତ୍ରୟୋବିଂଶ ପ୍ରକାଶ

(ଲଡ୍ଡୁବାବାଙ୍କ ମହିମା ବର୍ଣ୍ଣନ-ଚଢ଼େୟାର ସର୍ପାଘାତ ଓ ବାବାଙ୍କ କୃପାରୁ ଜୀବନ ଲାଭ)

ପ୍ରଭୁଙ୍କ ମହିମା ଅପରିସୀମ
କାର୍ଯ୍ୟ ତାଙ୍କର ଅଟେ ଅପ୍ରତିମ
ଭକ୍ତ ମନସ୍କାମ ପୂରାଇ ବାରେ
ସମାସ୍କନ୍ଧ କେହି ନାହିଁ ତାହାରେ
କଷ୍ଟିର କଷ୍ଟ ଦହନ୍ତି,
ଭକତ ତାଙ୍କର, ସହସ୍ର ସଂଖ୍ୟାର,
ମହିମାକୁ ବଖାଣନ୍ତି ।୧ ।
ସେହିପରି କିଛି ଭକତ କଥା
ବର୍ଣ୍ଣିବା ତାଙ୍କର ଭକତି ଗାଥା
ସେମାନଙ୍କର ଜୀବନ ଚରିତ
ପ୍ରଭୁ ମହିମା କରଇ ବିଖ୍ୟାତ
ବିଷୟ ଶୁଣି ତାଙ୍କର,
ମନକୁ ପବିତ୍ର, ଶରୀର ପବିତ୍ର,
କର ହେ ଭକତ ବର ।୨ ।
କନ୍ଧ ସାହିର ଏକଇ ଶବର
ଚଢ଼େଇ ଧରିବା ବେଉଷା ତାର
ପ୍ରତ୍ୟହ ଜଙ୍ଗଲୁ ଧରେ ଚଢ଼େଇ
ଚଢ଼େଇ ବିକି ଜୀବନ ବଞ୍ଚଇ
ଗଲା ଦିନେ ଜଙ୍ଗଲକୁ,
ଅଠାପାଗ କରି, ନଳ କାଠି ଧରି,
ଚଢ଼େଇ ସେ ଧରିବାକୁ ।୩ ।
ବୁଲିଲା ସାରା ଭଣ୍ଡାର ମୁଣ୍ଡିଆ
ନ ମିଳିଲେ ଗୋଟେ କୋଇଲି କୁଆ
ବେଳ ଯାଇ ରତରତ ହୋଇଲା
ଚଢ଼େଇ ନ ପାଇ ମୁଣ୍ଡ ଘୁରିଲା
ବୃକ୍ଷକୁ ବୃକ୍ଷ ଦେଖଇ,
କାହିଁ କେଉଁଠାରେ, ବୃକ୍ଷର ଉପରେ,
ନ ଦିଶେ ତାକୁ ଚଢ଼େଇ ।୪ ।

ବୃହତ ଗୋଟିଏ ବୃକ୍ଷ ଉପରେ
ରହିଛି ବିସ୍ତୀର୍ଣ୍ଣ ଏକ କୋଟରେ
ଭାବିଲାଏଥିରେ ଥିବେ ଚଢ଼େଇ
ପହଞ୍ଚିଲା ଚଢ଼ି କୋଟରେ ଯାଇ
ଚଢ଼େଇ ଧରିବା ପାଇଁ,
ହାତକୁ କୋଟରେ, ଅତି ସଂଯମରେ,
ତତ୍‌କ୍ଷଣେ ଦେଲା ପୁରାଇ ।୫ ।
କୋଟରେ ପୂର୍ବରୁ ଥିଲେ ଚଢ଼େଇ
ନାଗ ସର୍ପ ସବୁ ଦେଇଛି ଖାଇ
ଚଢ଼େଇଙ୍କୁ ଖାଇ ଖୋଲ ଭିତରେ
ଶୋଇଥିଲା ସାପଟି ଆନନ୍ଦରେ
ଧରିଲା ତାକୁ ଶବର,
ମାରିଣ ଚୋଟକୁ, ହରିଲା ପ୍ରାଣକୁ,
ମରି ପଡ଼ିଲା ଶରୀର ।୬ ।
ଡ଼େରି ହେବାରୁ ଘରେ ଚଢ଼େଉଣୀ
ଅଘଟଣ ଘଟିଲା ପରିମାଣି
ଗଲା ଜଙ୍ଗଲକୁ ଖୋଜିବା ପାଇଁ
ଜଙ୍ଗଲ ସାରା ସେ ବୁଲି ଖୋଜଇ
ସ୍ଥାନରୁ ସ୍ଥାନକୁ ଗଲା,
କୌଣସି ସ୍ଥାନରେ, ନ ପାଇ ମନରେ,
ବିଭିନ୍ନ ଚିନ୍ତା ଘାରିଲା ।୭ ।
ଝରଣା ପାଖରେ ଯାଇ ଦେଖିଲା
ପାହାଡ଼ ଉପରେ ପୁଣି ଚଢ଼ିଲା
ଅତ୍ୟୁଚ୍ଚ ସ୍ୱରରେ ଡାକ ପକାଇ
ନାଥ ନାଥ ବୋଲି ରଡ଼ି ଛାଡ଼ଇ
ନ ପାଇଲା ପ୍ରତ୍ୟୁତ୍ତର,
ବିକଳ ହୋଇଣ, କରଇ ରୋଦନ,
ଦୁଃଖରେ ହୋଇ ଆତୁର ।୮ ।
ବାତୁଳୀ ପ୍ରାୟେ ଚଢ଼େଉଣୀ ହୋଇ
ପହଞ୍ଚିଲା ବୃକ୍ଷ ମୂଳରେ ଯାଇ
ଦେଖିଲା ଚଢ଼େୟା ଶୋଇ ରହିଛି
ନଳକାଠି ତାର ଦୂରେ ପଡ଼ିଛି
ପାଟିରୁ ବାହାରେ ଫେଣ,
ସର୍ପ ଆଘାତରେ, ମରିଛି ଏଠାରେ,
ଶରୀରୁ ଛାଡ଼ିଛି ପ୍ରାଣ ।୯ ।

ଗ୍ରାମକୁ ଆଣିଲା କାନ୍ଧରେ ଧରି
ସାଇ ଭାଇ ମିଳିଲେ ଆସି କରି
ଗାଆଁ ବଇଦକୁ ଡ଼ାକି ଆଣିଲେ
ବିଷର ଚିକିତ୍ସା ଆରମ୍ଭ କଲେ
ନ ହେବାରୁ ଲାଭ କିଛି,
ଯେ ଯାହା କହିଲା, ତାହା ଖୁଆ ହେଲା,
ପେଟକୁ ନ ଯାଏ କିଛି ।୧୦।
କିଛି ଚେର ମୂଳି ଔଷଧ ଦେଲେ
କ୍ଷଣେ ଅଧେ ତହିଁ ଅପେକ୍ଷା କଲେ
ଡକାଇଲେ ଜଉତିଷକୁ ଯାଇ
ପାଞ୍ଜି ଦେଖି ସିଏ ଫଳ କୁହଇ
ସର୍ପାଘାତ ଥିଲା ଯାର,
ତତ୍‌କ୍ଷଣେ ଏହାକୁ, ଶିବ ମନ୍ଦିରକୁ,
ନେଇ ଜଳଶାୟୀ କର ।୧୧।
ତାକୁ ଧରି ସର୍ବେ ଗଲେ ମନ୍ଦିର
ଅକର୍ମ କର୍ମ ଦାୟକ ଶଙ୍କର
ମନ୍ଦିର ସିଂହ ଦୁଆରକୁ ନେଲେ
ମନ୍ଦିର ସାମ୍ନାରେ ଶୁଆଇ ଦେଲେ
ମନକୁ ସ୍ଥିର କରିଣ,
ବାବାଙ୍କୁ ମନ୍ଦିରେ, ଡାକିଲେ ଆତୁରେ,
ବିକଳ ଅତି ହୋଇଣ ।୧୨।
ବାବା ଶବ୍ଦରେ କମ୍ପିଲା ଅଞ୍ଚଳ
ଢାଳିଲେ ଶବର ଉପରେ ଜଳ
ମାଳି ସେବକଙ୍କୁ ଶୀଘ୍ର ଡକାଇ
କରାଇଲେ ପ୍ରଭୁଙ୍କୁ ଜଳଶାୟୀ
ଶବର ଉଠି ବସିଲା,
ସାରା ସଂସାରରେ, ପ୍ରଭୁଙ୍କ ନାମରେ,
ଜୟ ପତାକା ଉଡ଼ିଲା ।୧୩।
ଶବର ଉଠିଣ ଜୀବନ ପାଇ
ଲଡୁବାବା ଲଡୁବାବା ଡାକଇ
ନିସ୍ତରିଲି ନିସ୍ତରିଲି ଶବ୍ଦରେ
କମ୍ପାଏ ମନ୍ଦିର ଶୁଭଇ ଦୂରେ
ସେ ଶବରର ମୁଖରୁ,
ଅନର୍ଗଳ ଭାବେ, ଶିବ ସ୍ତୁତି ଭାବେ,
ସ୍ଫୁରେ ପୂର୍ବ ସୁକୃତରୁ ।୧୪।

## ଚଡ଼େୟାର ଶିବ ସ୍ତୁତି

ଅନନ୍ତ କୋଟି ବ୍ରହ୍ମାଣ୍ଡର ପତି
ଅଚିନ୍ତ୍ୟ ଅବ୍ୟକ୍ତ ଯା'ର ଶକତି
ଅଟେ ରୂପ ଯାହାର ଛତ୍ରାକାର
ଅଛି ବସି ଯେ ଶରଣକୁଳର
ଅଖଣ୍ଡ ବିଶ୍ୱାସ ରଖି,
ଅନନ୍ୟ ଭାବରେ, ଅନ୍ତରେ ସୁମରେ,
ଅଣାକାର ତିନି ଆଖି । ୧ ୫ ।

ଆନନ୍ଦ ସ୍ୱରୂପ ଲଡୁକେଶ୍ୱର
ଆକାଶ ପରି ନୀଳ କଣ୍ଠ ଯା'ର
ଆଷ୍ଟେ ଧରିଅଛ ହସ୍ତେ ତ୍ରିଶୂଳ
ଆକର୍ଷି ନାଶ ଭକ୍ତ ପାପବଳ
ଆଶିଷ ଦିଅ ହେ ମୋତେ,
ଆହେ ଲଡୁକେଶ, ଆହେ କୃତ୍ତିବାସ,
ଆତୁରେ ଡାକୁଛି ତୋତେ । ୧ ୬ ।

ଇଚ୍ଛାମୟ ପ୍ରଭୁ ହେ ଲଡୁବାବା
ଇନ୍ଦୁଧର ଗିରୀଶ ବୃଷପର୍ବା
ଇନ୍ଦ୍ରିୟ ଦାସ ମୁଁ ତାଙ୍କ କୀଙ୍କର
ଇନ୍ଦ୍ରିୟ ସ୍ୱାମୀ ତୁମେ ମହେଶ୍ୱର
ଇନ୍ଦ୍ର ପଦ ନ ଲୋଡ଼ଇ,
ଇଙ୍ଗିତେ ତୁମର, ଇଗରିଷ୍ଟ[୧] ମୋର,
ଇଚ୍ଛିକା[୨] ନାଶ ଗୋସାଇଁ । ୧ ୭ ।

ଈଡ଼ା[୩] କରନ୍ତି ବ୍ରହ୍ମା ବିଷ୍ଣୁ ଆସି
ଈପ୍ସିତ ବର ହେ ଦିଅ ପରଶି
ଈକ୍ଷିତ[୪] ଦୟା ହୋଇଲେ ତୁମର
ଈହା[୫] ପୂର୍ଣ୍ଣ ହୋଇଥାଏ ଭକ୍ତର
ଈଶ୍ୱରୀଶ ପଞ୍ଚାନନ,
ଈର୍ଷାମାନୁ ହର, ଈତି[୬] କର ଦୂର,
ଈଶ ଦର୍ଶନେ[୭] ଈଶାନ । ୧ ୮ ।

ଉମାପତି ଆଶୁତୋଷ ବିଶ୍ୱେଶ
ଉଗ୍ରଶେଖରା ଧର[୮] ବ୍ୟୋମକେଶ
ଉଚ୍ଚାଟ ହେଉଛି ମନ ମୋହର
ଉତ୍କଟ ରୂପ ଦେଖି ସଂସାରର
ଉଦ୍ଧାର ଲଡୁକେଶ୍ୱର,
ଉଦାସ ମୋ ହର, ଉଦାର ଠାକୁର,
ଉଦ୍ଧାନ[୯] ଫେଡ଼ ଶଙ୍କର । ୧ ୯ ।

ଊଣା ହୋଇଲା କି ମୋର ଭକତି
ଊର୍ଦ୍ଧ୍ୱଚରଣ[୧୦]ଭଗବତୀ ପତି
ଊର୍ଦ୍ଧ୍ୱରେ ତପ ପ୍ରଭୁ ସଦାଶିବ
ଊହିତ[୧୧] ନୁହଁଇ ତୁମ୍ଭର ଭାବ
ଊର୍ମି[୧୨]ଊର୍ମିରେ ମୁଁ କ୍ଳାନ୍ତ,
ଊର୍ଜସ୍ୱୀ ଠାକୁର, ଊର୍ମି ମୋର ହର,
ଊଷ[୧୩]ଚର୍ଚ୍ଚିତ ଜୟନ୍ତ ।୨୦।
ଋକ୍ଷ ରାଜଧାରୀ[୧୪]ହେ ବାମଦେବ
ଋଜୁ[୧୫] ସ୍ୱଭାବ ଧାରକ ଭୈରବ
ଋଷିମୁନି ବନ୍ଦ୍ୟ ପ୍ରଭୁ ଭୁତେଶ
ଋଷଭ ଧ୍ୱଜ ଶ୍ରୀକଣ୍ଠ,
ଋଦ୍ଧି[୧୬] ହୃଦହାର, ଋଣଦାଉ ହର,
ଋତିସ୍ମର[୧୭] ଶୀତି କଣ୍ଠ ।୨୧।
ଏକଦୃକ୍[୧୮] ବିଶ୍ୱ ବ୍ରହ୍ମାଣ୍ଡ ପିତା
ଏକାନ୍ତବାସୀ ଜଗତ କରତା
ଏକ ମନ ହୋଇ ହେ ବିଶାଳାକ୍ଷ
ଏକ ମୁଖ ହୋଇ ଡାକୁଛି ରଖ
ଏ ଚରାଚର ଜଗତେ,
ଏକ ହିଁ ଆଶ୍ରୟ, ଏକାକ୍ଷର ମୟ,
ଏହା ଜାଣନ୍ତି ସମସ୍ତେ ।୨୨।
ଐକାତ୍ମ୍ୟ ହରିହର ମୂର୍ତ୍ତି ରୂପେ
ଐକାନ୍ତିକ ରୂପେ ଲିଙ୍ଗ ସ୍ୱରୂପେ
ଐକୁଣ୍ଠ[୧୯]କ୍ଷେତ୍ର ଏ ଶରଣକୁଳେ
ଐତିହ୍ୟ ରହିଛି ଯା'ର ସୟଳେ
ଐଶ୍ୱର୍ଯ୍ୟ ରୂପେ ରହିଛ,
ଏଶ୍ୱର୍ଯ୍ୟ ଗର୍ବକୁ, ଐହିକ ତାପକୁ,
ଐଶାନୀ ଈଶ ନାଶୁଛ ।୨୩।
ଓଁକାର ମଧ୍ୟରେ ସ୍ଥିତି ତୁମର
ଓଖ[୨୦] ନାଶକର ପ୍ରଭୁ ମୋହର
ଓଜର ଶୁଣି ପ୍ରଭୁ ନକୁଳୀଶ
ଓଟାରୁଛି କାଳ ରଖ ମହେଶ
ଓଧିର[୨୧] ଶରୀର ଘରେ,
ଓର ଦେଖିକରି, ଓର ବଣାକରି,
ଓଲୁ ବନାଇଁ ସେଥିରେ ।୨୪।

ଔଷଧି ଈଶ ଧାରକ ଶଙ୍କର
ଔଷଧ ତୁମେ ସଂସାର ବିଷର
ଔଶନସୀ ତାତ ବନ୍ଦ୍ୟ ଗଜାରି
ଔପମ୍ୟ ପ୍ରଦାନେ ସାଧ୍ୟ କାହାରି
ଔଦାର୍ଯ୍ୟ ପାଇଁ ବିଖ୍ୟାତ,
ଔଦାସୀନ୍ୟ ଛାଡ଼ି, ଔତ୍କର୍ଷ୍ୟକୁ ଯୋଡ଼.
ଔତ୍କଣ୍ଠ୍ୟକର ନମିତ ।୨୫ ।

(Footnotes)

[୧]ଇଗରିଷ୍ଟ-ଅମଙ୍ଗଳ,ରିଷ୍ଟ

[୨]ଇଛିକା-ଏହିକ୍ଷଣି

[୩]ଇଡ଼ା-ସ୍ତୁତି

[୪]ଇକ୍ଷିତ-ଅକ୍ଷ

[୫]ଈହା-ଅଭିଳାଷ,

[୬]ଈତି-ବିପତ୍ତି

[୭]ଈଶ ଦର୍ଶନ-କଟାକ୍ଷ

[୮]ଉଗ୍ରଶେଖରା-ଗଙ୍ଗା

[୯]ଉଦ୍ଧାନ-ବନ୍ଧନ

[୧୦]ଉର୍ଦ୍ଧ୍ୱଚରଣ-ଶିବଙ୍କ ଶରଭ ଅବତାର

[୧୧]ଉହିତ-ବିତର୍କିତ

[୧୨]ଉର୍ମି-କଷ୍ଟ,ପୀଡ଼ା

[୧୩]ଉଷ-ଚନ୍ଦନାଦି ସୁଗନ୍ଧ ଲେପ

[୧୪]ଋକ୍ଷରାଜ-ଚନ୍ଦ୍ର

[୧୫]-ଋଜୁ-ସରଳ, ଦୟାଳୁ

[୧୬]ଋଦ୍ଧି-ପାର୍ବତୀ

[୧୭]ଋତିସ୍କର-ମଙ୍ଗଳ ଜନକ,ଶୁଭଜନକ

[୧୮]ଏକଦୃକ୍-ଶିବ

[୧୯]ଐକୁଣ୍ଠ-ସର୍ବଶ୍ରେଷ୍ଠ

[୨୦]ଓଖ-ବଦଭ୍ୟାସ

[୨୧]ଓଧିର-ବନ୍ଦୀ

ପ୍ରଭୁ ମହିମା ହୋଇଲା ବିଖ୍ୟାତ
ଲୋକ ମୁଖରେ ହେଲା ପ୍ରଚାରିତ
ଦଣ୍ଡ ନାଟରେ ଅଭିନୟ ହେଲା
ଗ୍ରାମେ ଗ୍ରାମେ ଘଟଣାଟି ବ୍ୟାପିଲା
ଚଡ଼େୟା ଲୀଳା ନାମରେ,
ଲଡୁବାବାଙ୍କର, ମହିମା ପ୍ରଚାର,
ହୁଅଇ ପଥ ପ୍ରାନ୍ତରେ ।୨୬ ।

ପ୍ରଭୁ ନାମ କରିବାକୁ ପ୍ରଚାର
ପ୍ରଭୁଙ୍କର ବାନାମ୍ବରାବତାର
ହରିହରପୁରେ ପଞ୍ଚିରିଡ଼ାରେ
ଚଡ଼ୟାପଲ୍ଲୀ ଅସୁରଢ଼ିପାରେ
ପୂଜା ପାଉଛନ୍ତି ଶିବ,
ଦଣ୍ଡୁଆ ଭକତ ,ଧାୟୀ ଅବିରତ,
ପୂଜନ୍ତି ପାର୍ବତୀଧବ ।୨୭।

ରାବେରା ଓଡ଼ଗାଁ କଲ୍ୟାଣପୁର
ସୋଲପଟା ଓ ନବଘନପୁର
କୁରାଳ ନନ୍ଦିଘୋର ମହୁଲିଆ
କୁରୁମୁଣ୍ଡାଳି ଓ ରବିଗାଡ଼ିଆ
ଗୋଡିସାହି ଭାଟସାହି,
ରଙ୍ଗଣୀପାଟଣା, ଯେ ମୁଗପାଟଣା,
ବିରୁଡ଼ା ବଢ଼ିଆସାହି ।୨୮।

ଭାଲିଆଡ଼ିହିରେ ଛନ୍ତି ଠାକୁର
ପଞ୍ଚୁମୁ ବରସାହି ଜୟପୁର
ପାଣ୍ଡୁରୀପଡ଼ା ଇଟାମାଟିଠାରେ
ଗିରିଡ଼ିପଲ୍ଲୀ ଶରଧାପୁରରେ
ଚଇତ୍ର ମାସେ ଭକତେ,
ଭକ୍ତି ହୃଦୟରେ, ସେବନ୍ତି ଶଙ୍କରେ,
ପୂଜନ୍ତି ନିୟମ ମତେ ।୨୯।

ଶିଖରପୁରେ ଛନ୍ତି ବାନାମ୍ବର
ବଡ଼ଗୋରଡ଼ାରେ ବିଜେ ଠାକୁର
ନରେନ୍ଦ୍ରପୁରେ ଯାତ୍ରା କରୁଛନ୍ତି
କଟରାଝରୀ ଗ୍ରାମେ ଶୋଭା ପାନ୍ତି
ନାଟେ ଚଡ଼ୟା ଚରିତ,
ମହିମା ପ୍ରଭୁର, କରନ୍ତି ପ୍ରଚାର,
ଅଭିନୟ କରି ଭକ୍ତ ।୩୦ ।

ଧିରେ ପାଖ ଆଖ ଗ୍ରାମୁ ଗ୍ରାମରେ
ବ୍ୟାପୀଛି ଉପକୂଳ ଜିଲ୍ଲାଦିରେ
ତେର ଋଷି ମିଶି ଭଗତା ତେର
ଦଣ୍ଡୁଆ ନାମରେ ହୋଇ ବାହାର
ସାତ, ଏଗାର ବା ତେର,
ଦିନ ପରିଯନ୍ତ, ପାଳନ୍ତି ଯେ ବ୍ରତ,
ଧାୟୀ ନାମ ପ୍ରଭୁଙ୍କର ।୩୧ ।
ନିଜର ନିଷ୍ଠା ପ୍ରଦର୍ଶନ ପାଇଁ
ନିଆଁରେ ଚାଲନ୍ତି ନାମକୁ ଗାଇ
ମାନସିକ କରିଥାନ୍ତି ମନରେ
ବିଭିନ୍ନ କଷ୍ଟ ସହନ୍ତିଶରୀରେ
ବ୍ରତ ହୋଇଲେ ପୂରଣ,
ବ୍ରତକୁ ଭାଙ୍ଗନ୍ତି, ଗୃହକୁ ଯାଆନ୍ତି,
ବିଷୁବ ସଂକ୍ରାନ୍ତି ଦିନ ।୩୨ ।
ମୋ ଲଡୁବାବା ସମର୍ଥ ଏମନ୍ତ
ଭକତର ପାପ କରନ୍ତି ଅନ୍ତ
ଡାକ ତାର ଶୁଣି ଥାନ୍ତି ତତ୍କ୍ଷଣ
ମନକାମନା ପୂରାନ୍ତି ବହନ
ଚରଣରେ ତାହାଙ୍କର,
ଭକତି ମନରେ, ପୁତ ହୃଦୟରେ,
ପ୍ରଣମେ ମୁଁ ବାରମ୍ବାର ।୩୩ ।





# ଚତୁର୍ବିଂଶ ପ୍ରକାଶ

(ଲଡୁବାବାଙ୍କ ମହିମା ବର୍ଣ୍ଣନ-ମହେଶ୍ୱର ମିଶ୍ରର
ମୃତ୍ୟୁ ଯୋଗରୁ ଉଦ୍ଧାର)

କହୁଛି ଆଉ ଏକ ଭକ୍ତକଥା
ଶ୍ରବଣେ ତୁଟିଯିବ ଭବ ବ୍ୟଥା
ଅତ୍ୟନ୍ତ ପବିତ୍ର ଭକ୍ତ ଚରିତ୍ର
ପ୍ରଭୁ ମହିମା ତହିଁରେ ଜଡ଼ିତ
ଦୃଢ଼ ହେବ ତନୁ ମନ,
ଧ୍ୟାନରେ ଶୁଣିଲେ, ହୃଦୟେ ସ୍ମରିଲେ,
ପାଦକୁ କରି ମନନ ।୧ ।
ଗଞ୍ଜାମ ଆଠଗଡ଼ ଅଞ୍ଚଳର
ଯୁବକ ଜଣେ ନାମ ମହେଶ୍ୱର
ମିଶ୍ର ବ୍ରାହ୍ମଣ ତା ଜାତି ଅଟଇ
ମାତା ଜାତକ ଜ୍ୟୋତିଷେ ଦେଖାଇ
ଜ୍ୟୋତିଷ ଠାରୁ ଜାଣିଲେ,
ଜାତକରେ ତା'ର, ଲେଖା ଯେ ପ୍ରକାର,
ପଚାରି କରି ବୁଝିଲେ ।୨ ।
ଗୃହଦାହ ଦଶା ଦଶ ବର୍ଷରେ
ପିତୃ ବିୟୋଗ ପନ୍ଦର ବର୍ଷରେ
କୋଡ଼ିଏ ବର୍ଷ ଛ ମାସ ଛ ଦିନେ
ଯୋଗରୁ ଯିବ ଶମନ ସଦନେ
ଦେଖିଲେ ମାତା ତାହାର,
ଦଶ ବରଷରେ, ପନ୍ଦର ବର୍ଷରେ,
ଘଟିଲା ସେହି ପ୍ରକାର ।୩ ।
ଜ୍ୟୋତିଷ ଭବିଷ୍ୟବାଣୀ ଯେମନ୍ତ
ଦୁଇ ଘଟଣା ଘଟିଲା ତେମନ୍ତ
ତେଣୁ ମାତା ମନେ ଦୃଢ଼ ବିଶ୍ୱାସ
ଶେଷଟି ନିଶ୍ଚୟ ହେବ ଅବଶ୍ୟ
ପୂର୍ବାନୁମାନ ତିଥିରେ,
ମହେଶ୍ୱର ପ୍ରାଣ, ନେବ ହିଁ ଶମନ,
ଜ୍ୟୋତିଷଙ୍କ ଅନୁସାରେ ।୪ ।

ଜ୍ଞାନୀଜନଙ୍କ ଉପଦେଶ ନେଇ
ଦୁତୀକେଶ୍ୱରଙ୍କ ମନ୍ଦିରେ ଯାଇ
ଓଡ଼ଗାଁରୁ ସାତ କିଲୋମିଟର
ଅଟନ୍ତି ସିଏ ପ୍ରତ୍ୟକ୍ଷ ଠାକୁର
ଶୂଳିଆ ପାଦ ଦେଶରେ,
ଅଧିଆ ପଡ଼ିଲା, ନିଷ୍ଠାରେ ରହିଲା,
ମାର୍କଣ୍ଡ ଋଷି ପ୍ରକାରେ ।୫ ।
କିଛି ଦିନ ସେଠି ରହିବା ପରେ
ମଧ ରାତ୍ରେ ଦିନେ ପ୍ରଭୁ ସ୍ୱପ୍ନରେ
କହିଲେ ବାବୁ ମୋ ବଚନ ଶୁଣ
ତୋ ମାରକ ଦଶା ପରିବର୍ତ୍ତନ
ମୋ ଶକ୍ତି ଭିତରେ ନାହିଁ,
ଶରଣକୁଳରେ, ବାବା ମନ୍ଦିରରେ,
ଗୁହାରିଆ ପଡ଼ ଯାଇ ।୬ ।
ଲଡୁବାବାଙ୍କ ମନ୍ଦିରକୁ ଯାଅ
ତାଙ୍କ ପାଶେ ଦୁଃଖ ତୋର ଜଣାଅ
ତୁମ୍ଭଙ୍କୁ ଅଧିକ ଆୟୁଷ ଦାନ
କରି ବଢ଼ାଇବେ ତୋର ଜୀବନ
ପୂର୍ଣ୍ଣ ହେବ ମନସ୍କାମ,
ଜୀବନ ଦାନରେ, ଆୟୁ ପ୍ରଦାନରେ,
ଲଡୁବାବା ଅପ୍ରତିମ ।୭ ।
ତତ୍‌କ୍ଷଣେ ଆସି ଶରଣକୁଳକୁ
ଭେଟିଲେ ଭରତ ରାୟ ଗୁରୁଙ୍କୁ
ରହିଣ ତାଙ୍କର ହେପାଜତରେ
ଅଧିଆ ପଡ଼ିଲେ ଯାଇ ମନ୍ଦିରେ
ପୂର୍ଣ୍ଣ ନିଷ୍ଠାରେ ରହିଲେ,
ଶ୍ରୀଲଡୁକେଶ୍ୱର, ଶ୍ରୀଲଡୁକେଶ୍ୱର,
ନିଶି ଦିବସ ଧାୟିଲେ ।୮ ।
ପ୍ରଭୁଙ୍କର ଲୀଳା କେଡ଼େ ବିଚିତ୍ର
ସେହି ଦିନଟି ଥିଲା ଶିବରାତ୍ର
କହିଥିଲା ତାକୁ ଯାହା ଜ୍ୟୋତିଷ
ତା'ର ନିର୍ଦ୍ଧାରିତ ମୃତ୍ୟୁ ଦିବସ
ସେ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ,
ମହେଶ୍ୱର ପ୍ରାଣ, ଶରୀର ଛାଡ଼ିଣ,
ଗଲାଚାଲି ଯମପୁରେ ।୯ ।

ଡାକ୍ତର ଡାକରା ପାଇ ଆସିଲେ
ଦେଖି ତାକୁ ମୃତ ଘୋଷଣା କଲେ
ମନ୍ଦିରେ ବାଳକ ପଡ଼ିଛି ମରି
ପ୍ରଭୁଙ୍କର ବେଢ଼ା ହେବ କିପରି
ବଡ଼ପଣ୍ଡା ଆଉ ମାଳି,
ଭକତ ସେବକ, ସର୍ବେ ହୋଇ ଏକ,
ଡାକିଲେ ଚନ୍ଦ୍ର ମଉଳି ।୧୦।
ଓଁ ଶିବରାମାଭ୍ୟାଂ ଶବ୍ଦ ଶେଷରେ
ବିଦ୍ମହେ ଯୋଗକରିଣ ଭକ୍ତିରେ
ହରିହରାଭ୍ୟାଂ ଧିମହୀ କରିଯୁକ୍ତ
ତନ୍ନୋ ଲଡ୍ଡୁକେଶ ପ୍ରଚୋଦୟାତ୍
ଗାଇଲେ ହୋଇ ବିକଳ,
ଲଡ୍ଡୁବାବାଙ୍କର, ଗାୟତ୍ରୀ ମନ୍ତର,
ଜପିଲେ ସେବକ ଦଳ ।୧୧।
ଦୃଢ଼ ବିଶ୍ୱାସ ସବୁରି ମନରେ
ସମସ୍ତେ ଡାକିଲେ ଏକ ସ୍ୱରରେ
ନିଶ୍ଚୟ ଶୁଣିବେ ଲଡ୍ଡୁକେଶ୍ୱର
ଉଦ୍ଧାରିବେ ସିଏ ଭକ୍ତ ନିଜର
ଗୁହାରିଆଟି ଉଠିବ,
ବଂଚିଲେ ଭକତ, ଘୋଷିବ ଜଗତ,
ନାମ ପ୍ରସିଦ୍ଧ ହୋଇବ ।୧୨।
ଭୋଅର ଚାରିଟା ହେଲା ବେଳକୁ
ସେହି ପିଲା ଯାଇ ମୁଖଶାଳାକୁ
ଦର୍ଶନ କରୁଛି ଲଡ୍ଡୁକେଶ୍ୱର
ଗାଉଛି ଭକ୍ତିରେ ସ୍ତୁତି ତାଙ୍କର
ସୁଲଳିତ କଣ୍ଠ ସ୍ୱରେ,
ଭାବରେ ବିଭୋର, ଆତ୍ମସ୍ଥ ଶରୀର,
ସମାଧି ଯୋଗାବସ୍ଥାରେ ।୧୩।

## ମହେଶ୍ୱରର ଶିବ ସ୍ତୁତି

ବ୍ରହ୍ମା ମୁରାରୀ ଦେବତା ଅର୍ଚ୍ଚିତ
ନିର୍ମଳ ବିମଳ ଭାବେ ଶୋଭିତ
ଜନ୍ମ ଜନ୍ମର ଦୁଃଖ ବିନାଶକ
ଲଡ୍ଡୁବାବା କଷ୍ଟି କଷ୍ଟ ନାଶକ
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୧୪।

ସେବନ୍ତି ମୁନିଋଷି ସାଧୁ ସୁର
କନ୍ଦର୍ପ ନାଶନ କରୁଣାକର
ଦଶ ମସ୍ତକ ଦର୍ପ ବିନାଶକ
ଲଡ୍ଡୁବାବା ପାପୀ ପାପ ନାଶକ
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୧୫।

ସର୍ବ ସୁଗନ୍ଧ ସୁଲେପିତ ବାବା
ବୁଦ୍ଧି ବିବର୍ଦ୍ଧନ କାରଣ ବାବା
ସିଦ୍ଧ ସୁରାସୁର ବନ୍ଦିତ ବାବା
ଲିଙ୍ଗ ସ୍ୱରୂପ ତୁମେ ଲଡ୍ଡୁବାବା
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୧୬।

କନକ ମହାମଣିରେ ଭୂଷିତ
ଗଳା ତୁମ ଫଣି ପତି ବେଷ୍ଟିତ
ଦକ୍ଷରାଜା ସୁଯଜ୍ଞ ବିନାଶକ
ଲଡ୍ଡୁବାବା ଅହଂକାର ନାଶକ
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୧୭।

ଅଙ୍ଗେ କୁଙ୍କୁମ ଚନ୍ଦନ ଲେପିତ
କଣ୍ଠରେ ପଙ୍କଜ ହାର ଶୋଭିତ
ପୂର୍ବ ସଞ୍ଚିତ ପାପ ବିନାଶକ
ଲଡ୍ଡୁବାବା ଭବ ବାଧା ଧ୍ୱଂସକ
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୧୮।

ସେବା କରନ୍ତି ସର୍ବଭୂତ ଗଣ
ଭାବ ଭକ୍ତିରେ ତୁମ ତ୍ରିଲୋଚନ
କୋଟି ଦିନକର ପ୍ରଭାକୁ ବଳି
ଲଡ୍ଡୁବାବା ରୂପ ନୁହଁଇ କଳି
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୧୯।

ଅଷ୍ଟଦଳୋ ପରିବେଷ୍ଟିତ ବାବା
ସର୍ବସମ୍ଭବ କାରଣ ବାବା
ଅଷ୍ଟ ଦରିଦ୍ର ବିନାଶନ ବାବା
ଲିଙ୍ଗ ସ୍ୱରୂପ ତୁମେ ଲଡ୍ଡୁବାବା
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୨୦।
ସୁରଗୁରୁ ସୁରବର ପୂଜିତ
ସୁରବନ ପୁଷ୍ପେ ସଦା ଚର୍ଚ୍ଚିତ
ପ୍ରଭୁ ପରାତ୍ପର ପରମାତ୍ମକ
ଲଡ୍ଡୁବାବା ତୁମେ ଶୋକ ନାଶକ
ଘେନ ପ୍ରଣାମ ମୋହର,
ମୋତେ ମୃତ୍ୟୁଞ୍ଜୟ, କଲ ମୃତ୍ୟୁଞ୍ଜୟ,
ଲିଙ୍ଗ ସ୍ୱରୂପୀ ଈଶ୍ୱର ।୨୧।
କୃତଜ୍ଞତା ଜଣାଏ ମହେଶ୍ୱର
ଧନ୍ୟ ପ୍ରଭୁ ତୁମେ ଲଡ୍ଡୁକେଶ୍ୱର
ଭକ୍ତର ବନ୍ଧୁ ତୁମେ ବାସ୍ତବରେ
ଅଲୌକିକ ଲୀଳା କେ ବୁଝି ପାରେ
ମୃତକୁ ଦେଲ ଜୀବନ,
ସେବାସୀଏ ଦେଖି, ହେଲେ ମହାସୁଖୀ,
ଖୁସି ଛୁଇଁଲା ଗଗନ ।୨୨।
ବଂବଂ ଭୋଳା ନାଥ ଡାକରେ
କମ୍ପିଲା ମନ୍ଦିର ଶୁଭିଲା ପୁରେ
ସମାରୋହେ ବେଢ଼ା ହେଲା ସମାପ୍ତ
ଘଟଣା ପ୍ରଚାର ହେଲା ସର୍ବତ୍ର
ଧନ୍ୟ ଧନ୍ୟ ସର୍ବେ କଲେ,
ଧନ୍ୟ ଲଡ୍ଡୁବାବା, ଧନ୍ୟ ଭୋଳାବାବା,
ଧନ୍ୟ ଲୀଳା ତୋ କହିଲେ ।୨୩।
ଜଙ୍ଗଲ ନିଆଁ ପ୍ରାୟେକ ଖବର
ପହଞ୍ଚିଲା ସତାର ଖାଁ କର୍ଣ୍ଣର
ବଳଶାଳୀ ମୁସଲିମ ଶାସକ
ମନରେ ନାହିଁ ତା ଟିକିଏ ଦକ
ସତ୍ୟାସତ୍ୟ ବୁଝିବାକୁ,
ପିଆଦା ପଠାଇ,ଆଣିଲା ଡକାଇ,
ସେ ମହେଶ୍ୱର ମିଶ୍ରକୁ ।୨୪।

ସହଜେ ମୁସଲିମ ଲୋକ ସିଏ
ଏଥେ ବିଶ୍ୱାସ ନ କରେ ଟିକିଏ
ମିଶ୍ରଙ୍କୁ ଦେଖିଣ ସ୍ୱଶରୀରରେ
ଆଶ୍ଚର୍ଯ୍ୟ ହୋଇଲା,ଶଙ୍କା ମନରେ
ଶୁଣି ମୁଖରୁ ତାହାର,
ସମସ୍ତ ଘଟଣା, ବୁଦ୍ଧି ତାର ବଣା,
ଧନ୍ୟ ସେ ଲଡୁକେଶ୍ୱର ।୨୫ ।

ଲଡୁବାବା ଯେ ପ୍ରତ୍ୟକ୍ଷ ଠାକୁର
ଆର୍ତ୍ତି ଡାକ ଶୁଣିବାକୁ ତତ୍ପର
ଡାକୁ ଡାକୁ ଆସନ୍ତି ନିକଟକୁ
ଆର୍ତ୍ତ ନାଶ କରି ମୁକ୍ତି ଦେବାକୁ
ସର୍ବ ସମର୍ଥ ମୋ ପ୍ରଭୁ,
ଡାକେ ଯେ ଆତୁରେ, ଭାବ ଓ ଭକ୍ତିରେ,
ଶୁଣେ ଶୀଘ୍ର ଶିବ ଶମ୍ଭୁ ।୨୬ ।

ଯେ ଲଡୁବାବା ଅଟନ୍ତି ଏପରି
ଭକତ ଦୁଃଖକୁ ଯେ ପାରେ ହରି
ଅପୁତ୍ରିକେ ଦେଇ ପାରେ ସନ୍ତାନ
ମୃତକୁ ଦେଇ ପାରନ୍ତି ଜୀବନ
ଧ୍ୟାୟୀ ପାଦ ପଦ୍ମ ତା'ର,
ଯାଉ ମୋ ଜୀବନ, ଉମା ପ୍ରାଣ ଧନ,
ମୋ ଉପରେ କୃପା କର ।୨୭ ।

◆❖◆



# ପଞ୍ଚବିଂଶ ପ୍ରକାଶ

(ଲଡୁବାବାଙ୍କ ମହିମା ବର୍ଣ୍ଣନ-ସତାର ଖାଁ ପୁତ୍ରର ରୋଗ ଓ
ପ୍ରଭୁଙ୍କ କୃପାରୁ ମୁକ୍ତି ପ୍ରାପ୍ତି)

କହୁଛି ଏକ ଭକତ ଚରିତ
ଶ୍ରବଣେ ମନ ହୋଇବ ପବିତ୍ର
ପ୍ରଭୁଙ୍କ ପଦେ ବଢ଼ିବ ଭକତି
ଛିଡ଼ିବ ମାୟା ସଂସାରର ଭୀତି
ପ୍ରଭୁ ମହିମା ତହିଁରେ,
ରହିଅଛି ଭରି, ନାମ ତା ସୁମରି,
ସୁଖେ ବଞ୍ଚିବ ସଂସାରେ ।୧ ।
ଉଣେଶି ଶହ କୋଡ଼ିଏ ସାଲରେ
ନାଁବାଳକ ରାଜା କୃଷ୍ଣ ହୋଇଲେ
ସତାର ଖାଆଁ ସୁପରିଟେଣ୍ଡେଣ୍ଟ
ଅଖଣ୍ଡ କ୍ଷମତା ମନେ ତା ଆଣ୍ଟ
ହାତରେ ମୁଣ୍ଡ କାଟଇ,
ଲଡୁବାବାଙ୍କର, ରତନ ଭଣ୍ଡାର,
ଖୋଲିବ ବୋଲି କହଇ ।୨ ।
ଖୋଲିବ ବୋଲି ସେ ସିଂହ ଦୁଆରେ
ପହଞ୍ଚିଲା ଆସି ମୁହଁ ଯୋଅରେ
ସିଂହ ଦ୍ୱାର ଖୋଲି ଭିତରେ ଯିବ
ରତନ ଭଣ୍ଡାର ଖୋଲି ଦେଖିବ
ଖୋଲୁ ଖୋଲୁ ସିଂହ ଦ୍ୱାର,
ଗୁମୁଟ ଭିତରେ, ଦେଖିଣ ଭୟରେ,
ଥରିଲା ହୃଦୟ ତାର ।୩ ।
ଭୟଙ୍କର ଏକ ବିରାଟ ନାଗ
ଫଣା ଟେକିଛି ଦଂଶିବାକୁ ବ୍ୟଗ୍ର
ଦେଖିଣ ହୋଇଲା ପିଳେହି ପାଣି
ଥରି ଥରି ମାଗେ ପିଇବ ପାଣି
ମନରୁ ସେ ଭୁଲିଗଲା,
ରତନ ଭଣ୍ଡାର, ପୁଣି ଖୋଲିବାର,
ଚିନ୍ତା ପରିତ୍ୟାଗ କଲା।୪ ।

ମୁସଲିମ ଲୋକ ମୂର୍ତ୍ତି ପୂଜାରେ
ଶ୍ରଦ୍ଧା ବିଶ୍ୱାସ ନ ଥିଲା ଚିତ୍ତରେ
ଏହି ଘଟଣା ପରେ ହୃଦେ ତାର
ଲଡୁବାବା ପ୍ରତି ସାମାନ୍ୟ ଡର
ମନ ମଧ୍ୟେ ଦେଖା ଦେଲା,
ମନ୍ଦିର ପଛକୁ, ଥିବାର ରାସ୍ତାକୁ,
ସିଂହ ଦ୍ୱାରକୁ ଆଣିଲା ।୫ ।

ଦକ୍ଷ ଶାସକ ସେ ସତାର ଖାଆଁ
ଚାରିଆଡ଼େ ଶୁଭେ ତାହାର ନାଆଁ
କିଛି ଦିନ ଅନ୍ତେ ତାହାର ପୁତ୍ର
ଦୁରାରୋଗ୍ୟ ରୋଗେ ହେଲା ପୀଡ଼ିତ
ଡକାଇ ବୈଦ୍ୟ ଡାକ୍ତର,
ଆରୋଗ୍ୟ ନୋହିଲା, ଯେତେ ଯାହା କଲା,
ସବୁ ହୋଇଲା ବେକାର ।୬ ।

ଆଶା ଛାଡ଼ି ଦିନେ ଦୁଃଖ ମନରେ
ବସିଛି ସତାର କାର୍ଯ୍ୟାଳୟରେ
ହଠାତ୍ ଜଣେ ସୁଦୃଶ୍ୟ ଫକୀର
ଆସି ପହଁଚିଲେ ଆଗରେ ତାର
ପୁଛିଲେ ଖାଆଁ ସାହେବେ,
ମୁଖ ତୋର କାହିଁ, ମଳିନ ଦିଶଇ,
ପଡ଼ିଛୁ କିସ ଅଭାବେ ।୭ ।

ଖାଆଁ ସବୁକଥା ଖୋଲି କହିଲା
ପୁତ୍ରର ରୋଗ କଥା ବତାଇଲା
କହଇ ଏହି ମୋ ଦୁଃଖ କାରଣ
ବୁଦ୍ଧି ନ ଦିଶେ କରିବି କଅଣ
ପଦବୀ ମୋ ଅକାରଣ,
ଯଦି ପିତା ହୋଇ, ନ ପାରେ ବଞ୍ଚାଇ,
ନିଜ ପୁତ୍ରର ଜୀବନ ।୮ ।

ଫକୀର ପୁତ୍ରକୁ ଛୁଇଁ ଦେଖିଲେ
ଯାଅ ତୁ ଶରଣକୁଳେ କହିଲେ
ଲଡୁବାବାଙ୍କ ପାଶେ ମନାସିବୁ
ପୁତ୍ର ଭଲ ହେଲେ କଅଣ ଦେବୁ
ତିନି ଦିନେ ପୁତ୍ର ତୋର,
ନିଶ୍ଚେ ଭଲ ହେବ, ଜୀବନ ବଞ୍ଚିବ,
ଦୟା କରିବେ ଈଶ୍ୱର ।୯ ।

ତତ୍‌କ୍ଷଣେ ଗଲା ଶରଣକୁଳକୁ
ଭାସିଗଲା ଲୋକ କୁଟାଖିଅକୁ
ଆଶ୍ରା କଲା ପରି ସେ ଆଶ୍ରା କରି
ଯାଚ୍ଞା କରିଲା ନାମ ସୁମରି
କୃପା ଲଡ୍ଡୁବାବାଙ୍କର,
ତା ପୁତ୍ରେ ହୋଇଲା, ରୋଗ ମୁକ୍ତ ହେଲା,
କୃତଜ୍ଞ ହେଲା ସତାର ।୧୦।
କୃତଜ୍ଞତା ରୂପେ ଖାଆଁ ସତାର
ପୁଷ୍କରିଣୀ ପଙ୍କ କଲା ଉଦ୍ଧାର
ସଂପ୍ରସାରଣ କରାଇଣ ତାର
ପାବଚ୍ଛ ଶ୍ରେଣୀ ସୁନ୍ଦର ପ୍ରକାର
ନିର୍ମାଣ ଭାବେ କରିଲା,
ସାରା ସଂସାରରେ, ଜନମାନସରେ,
ପ୍ରଭୁ ନାମ ପ୍ରସରିଲା ।୧୧।
ମନ୍ଦିର ପାଶେ ଝରଣା ବହଇ
ଚତୁଃପାର୍ଶ୍ୱକୁ କାଦୁଏ ଭରଇ
ବେଢ଼ା ବୋଲି କିଛି ହିଁ ଯେ ନ ଥିଲା
ବଉଳ ମାଳା ଶିଳା ପକାଇଲା
ବେଢ଼ାକୁ ସୁନ୍ଦର କରି,
ଗଢ଼ାଇଲା ସିଏ, ଭକତି ମନରେ,
ଫକୀରଙ୍କୁ ନ ପାସୋରି ।୧୨।
ପୁତ୍ରାକାଂକ୍ଷୀ ଧନ ସଂପଦାକାଂକ୍ଷୀ
ବିଦ୍ୟାକାଂକ୍ଷୀ ଜ୍ଞାନ ସମ୍ମାନାକାଂକ୍ଷୀ
ଆସି ଲଡ୍ଡୁବାବାଙ୍କର ମନ୍ଦିରେ
ସଫଳ ହୋଇ ସହସ୍ର ସଂଖ୍ୟାରେ
ଫେରିଛନ୍ତି ପାଇ ବର,
ବର ପ୍ରଦାନରେ, ସଦା ସର୍ବାଗ୍ରରେ,
ପ୍ରଭୁ ମୋ ଲଡ୍ଡୁକେଶ୍ୱର ।୧୩।
ତାହାର ଅଭୟ ପାଦ ପଦ୍ମରେ
ଲୟ ରଖି ଜୀବନର ପଥରେ
ଚାଲଇ ଯେ ଭକ୍ତ ରଖି ବିଶ୍ୱାସ
ବିଶ୍ୱାସତା ପ୍ରଭୁ ରଖେ ଅବଶ୍ୟ
ହୃଦୟେ ସେ ଯାଏ ପଶି,
ବିବେକ ରୂପରେ, ରୁହଇ ସାଥିରେ,
ପ୍ରଭୁ କଇଳାସ ବାସୀ ।୧୪।

ଆଶୁତୋଷ ପ୍ରଭୁ ଲଡୁକେଶ୍ୱର
ଆଶ୍ରିତ ହୁଅଇ ଯିଏ ତାଙ୍କର
ସବୁ ଦାୟିତ୍ୱ ସେ ତାଙ୍କର ନେଇ
ଆଶିଷ ଦେଇ ତା ଦୁଃଖ ହରଇ
ଲଡୁବାବା ଯୋଗେଶ୍ୱର,
ମନ ହୃଦୟରେ, କର୍ମ ଓ ବାଣୀରେ,
ଆଶ୍ରିତ ମୁହିଁ ତାହାର ।୧୫।





# ଷଡ଼ବିଂଶ ପ୍ରକାଶ

(ବେଢ଼ା ପରିକ୍ରମା-ଲଡୁବାବାଙ୍କମନ୍ଦିର ଚତୁଃପାର୍ଶ୍ୱରେ ଭକ୍ତଙ୍କ
ପରିକ୍ରମାରଶାସ୍ତ୍ରୀୟ ମତ ବର୍ଣ୍ଣନ)

ଚାରି ପାର୍ଶ୍ୱରେ ମୂଳ ମନ୍ଦିରର
ବୁଲିବାକୁ ଥିବା ଚଲା ପଥର
ଅପର ନାମଟି ବେଢ଼ା ଅଟଇ
ଭକ୍ତ ମନ୍ଦିରକୁ ସେଥେ ଦେଖଇ
ପ୍ରଣମେ ପାର୍ଶ୍ୱ ଦେବତା,
ମନ୍ଦିରକୁ ସେଇ, ପ୍ରଦକ୍ଷିଣ ପାଇଁ,
ରହି ଅଛି ସେହି ରାସ୍ତା ।୧ ।

ବେଢ଼ା ଚାରିପଟେ ଯଦି ଭକତ
ପ୍ରଦକ୍ଷିଣ କରେ ହୋଇ ଉଷତ
କେନ୍ଦ୍ରସ୍ଥଳେ ଥିବା ପ୍ରଭୁଙ୍କ ଠାରୁ
ଉର୍ଜ୍ଜାଶକ୍ତି ଭକ୍ତକୁ ମିଳିବାରୁ
ରୋଗ ପାପ କଟେ ତାର,
ସମସ୍ତ କଲ୍ମଶ, ହୁଏ ତାର ନାଶ,
ପାଇ ଆଶିଷ ପ୍ରଭୁର ।୨ ।

ଶିବଙ୍କ ଦର୍ଶନ କରିବା ପରେ
ବେଢ଼ାରେ ବୁଲି କରି ଆନନ୍ଦରେ
ପାର୍ଶ୍ୱଦେବତାଙ୍କୁ ଦେଖେ ଭକତ
ବେଢ଼ାରେ ଯେତେ ଦେବେ ପ୍ରତିଷ୍ଠିତ
ପାଦେ କରଇ ପ୍ରଣାମ,
ଯେ ପ୍ରଭୁ ଯାହାର, ପ୍ରିୟ ପ୍ରିୟତର,
ଇଷ୍ଟ ତାର ପ୍ରିୟତମ ।୩ ।

ପୁଷ୍ପାଦି ଦିଅଇ ନିଜ ହାତରେ
ଦୀପାଳୀ ଜାଳଇ ତାଙ୍କ ପାଖରେ
ଆବେଗେ ଦୁଃଖତା ଜଣାଏ ପାଶେ
ଧ୍ୟାନ କରି କ୍ଷଣେ ପାଖରେ ବସେ
ମନ ହୁଅଇ ହରଷ,
କୃପା ପ୍ରଭୁଙ୍କର, କରୁଣା ପ୍ରଭୁର,
ପାଇ ତାଙ୍କରି ଆଶିଷ ।୪ ।

ଭକ୍ତେ କଲେ ପ୍ରଭୁଙ୍କୁ ପ୍ରଦକ୍ଷିଣ
ଶକ୍ତି ମିଳଇ ଏ ଶାସ୍ତ୍ର ପ୍ରମାଣ
ଅର୍ଦ୍ଧ ପ୍ରଦକ୍ଷିଣ ମହାଦେବଙ୍କୁ
ଜ୍ଞାନୀମାନେ କୁହନ୍ତି କରିବାକୁ
ଏହାର ତିନୋଟି ମତ,
ସେ ମତ ମାନିଣ, ଶିବ ପ୍ରଦକ୍ଷିଣ,
କରନ୍ତି ସବୁ ଭକତ ।୫ ।
ପ୍ରଥମ ମତଟିର ଅନୁସାରେ
ସୋମ ସୂତ୍ରକୁ ଯେ ଲଙ୍ଘନ କରେ
ବ୍ରହ୍ମ କପାଳୀ ଦୋଷ ଲାଗେ ତାକୁ
ଯାହା ଲାଗି ଥିଲା ପ୍ରଭୁ ଶିବଙ୍କୁ
ଲଡୁବାବା ମନ୍ଦିରରେ,
ଗଣେଶ ଦର୍ଶନ, ପୁଣି ଷଡ଼ାନନ,
ଦେଖିବ ବୁଲି ବେଢ଼ାରେ ।୬ ।
ତାହା ପରେ ଯିବ ଗଙ୍ଗାଙ୍କୁ ଦେଖି
ପ୍ରଣାମ କରିବ ସବୁ ଉପେକ୍ଷୀ
ପାଦୁକ ନଳା ପାଖରୁ ଫେରିବ
ଆଗକୁ କେବେ ହେଁ ନ ଆଗେଇବ
ସୋମସୂତ୍ର ନ ଲଙ୍ଘିଣ,
ହରଷେ ବୁଲିବ, ପୁଣ୍ୟ ଅରଜିବ,
ବେଢ଼ା କରି ପ୍ରଦକ୍ଷିଣ ।୭ ।
ଦେବ ଦେବ ପ୍ରଭୁ ଲଡୁକେଶ୍ୱର
ଦକ୍ଷିଣ ଦିଗେ ଛନ୍ତି ଶ୍ମଶାନର
ଏଣୁ ମନ୍ଦିର ଉତ୍ତର ଦିଗରେ
ଶ୍ମଶାନ ଅଛି ସୂକ୍ଷ୍ମ ସ୍ୱରୂପରେ
ଭକ୍ତେ ଶ୍ମଶାନ ମଧରେ,
ନ ପଶିବା ପାଇଁ, ସେ ଦିଗକୁ ଯାଇ,
ନ ଥାଆନ୍ତି ଭୟ ଡରେ ।୮ ।
ଏଇଟି ଅଟଇ ଦ୍ୱିତୀୟ ମତ
ଶ୍ରଦ୍ଧାରେ ମାନନ୍ତି ସବୁ ଭକତ
ମନ୍ଦିରକୁ ପ୍ରଦକ୍ଷିଣ କରନ୍ତି
ପୁଣ୍ୟାର୍ଜନ କରି ତୋଷ ହୁଅନ୍ତି
ମନ ପବିତ୍ର ହୁଅଇ,
ସମସ୍ତ ଜନ୍ମର, ପାପ ଭକତର,
ଯାଏ ସବୁ ନାଶ ହୋଇ ।୯ ।

ତୃତୀୟେ ପାଦୁକ ନଳା ଉତ୍ତରେ
ରହିଛି ଲଡ୍ଡୁବାବା ମନ୍ଦିରରେ
ମନ୍ଦିର ଅଧା ସେ ଯାଏଁ ହୁଅଇ
ଶିବାର୍ଦ୍ଧେ ପରିକ୍ରମା ଅନୁଯାଇ
ଗଙ୍ଗାଦେବୀଙ୍କ ଦର୍ଶନ,
କରି ଫେରିବାର, ଏହି ମନ୍ଦିରର,
ପରମ୍ପରା ଏ ପ୍ରମାଣ ।୧୦।
ଏ ସବୁ ନିୟମ ମାନି ଭକତେ
ବେଢ଼ା ବୁଲିବାକୁ ଭାବିଣ ଚିତ୍ତେ
ଯାଇ ବୃଷଭଙ୍କ କରି ଦର୍ଶନ
ତାପରେ ଲଡ୍ଡୁବାବା ଭଗବାନ
ଦେଖନ୍ତି ଆନନ୍ଦ ମନେ,
ପାଦୁକକୁ ପାଇ, ବିଲ୍ୱପତ୍ର ଖାଇ,
ପ୍ରଣମନ୍ତି ସନ୍ନିଧାନେ ।୧୧।
ହାତ ପାଦ ଧୋଇ ପୋଖରୀ ଜଳେ
ପ୍ରଣମିବ ଗଣେଶ ପାଦ ତଳେ
କାର୍ତ୍ତିକେଶ୍ୱରଙ୍କୁ ପ୍ରଣାମ କରି
ଯିବ ଗଙ୍ଗାମାତା ଦର୍ଶନ କରି
ପାଦୁକ ନଳା ପାଖରୁ,
ଫେରିଣ ଆସିବ, ମାଆଙ୍କୁ ନମିବ,
ଅନ୍ୟ ଦେବେତା ଉତ୍ତାରୁ ।୧୨।
ଅନ୍ୟ ଯେତେ ଯେତେ ଦେବତା ଛନ୍ତି
ବେଢ଼ାର ଶୋଭା ବର୍ଦ୍ଧନ କରନ୍ତି
ଏକକୁ ଏକେ ଦର୍ଶନ କରିବ
ସବୁରି ପାଦେ ନିଷ୍ଠେ ପ୍ରଣମିବ
ହୋଇଲେ ତାଙ୍କ କରୁଣା,
ପୂରୁବ ଜନ୍ମର, ସବୁ ପାପଭାର,
ନଷ୍ଟ ହୋଇ ହେବ ଊଣା ।୧୩।
ଘଣ୍ଟି ଶବଦ ବାବା ମନ୍ଦିରର
ଶୁଭେ ଯେ ଯାଏଁ ଶରଣକୁଳର
ସେ ଯାଏଁ ପ୍ରଭୁଙ୍କର ପ୍ରଭାବରେ
ପାପ ପଳାଇ ଯାଅଇ ଡରରେ
ପ୍ରଭୁ ମୋର ବଳବନ୍ତ,
ଅଭୟ ପାଦରେ, ଦଣ୍ଡବତ କରେ,
କୃପା ତାଙ୍କର ଅନନ୍ତ ।୧୪।

ପ୍ରଭୁ ମୋର କୃପାବନ୍ତ ଅନନ୍ତ
ଦେବେ ଅଜଣା ତାଙ୍କ ଆଦି ଅନ୍ତ
ଭକତ ଭାବରେ ବନ୍ଧା ଈଶ୍ୱର
ତାଙ୍କ ପାଖେ ଯେ ହୁଏ ଅଗ୍ରସର
ତାର ସମସ୍ତ ଦାୟିତ୍ୱ,
ନିଜେ ସେ ନିଅନ୍ତି, ଭକ୍ତି ପରଖନ୍ତି,
ପ୍ରଦାନନ୍ତି ଅମୃତତ୍ୱ । ୧୫ ।





# ସପ୍ତବିଂଶ ପ୍ରକାଶ

(ବେଢ଼ା-ଲଡୁବାବାଙ୍କ ବିଜେ ପ୍ରତିମା ମନ୍ଦିର
ଚତୁଃପାର୍ଶ୍ୱରେ ପରିଭ୍ରମଣର ତିଥି ଓ ନୀତି ବର୍ଣ୍ଣନ)

ଲଡୁବାବାଙ୍କର ବିଜେ ପ୍ରତିମା
ମନ୍ଦିରକୁ କରିଲେ ପରିକ୍ରମା
ବେଢ଼ା ନୀତି ନାମରେ ଅଭିହିତ
ସେବକ ଭାଷାରେ ହୁଏ କଥିତ
ପ୍ରଭୁ ଶ୍ରୀଚନ୍ଦ୍ରଶେଖର,
ବିମାନରେ ବସି, ବେଢ଼ା ବୁଲି ଆସି,
ତୋଷନ୍ତି ମନ ଭକ୍ତର ।୧ ।
ଛତିଶା ନିଯୋଗ ନେଇ ଠାକୁର
ବର୍ଷର ସବୁତକ ସୋମବାର
ଚତୁର୍ଦ୍ଦଶୀ ସହ ଯମ ଦ୍ୱିତୀୟା
ମାର୍ଗଶୀର ମାସ ଶୁକ୍ଳ ଦ୍ୱିତୀୟା
ନବାଙ୍କ ଓ ଚନ୍ଦନରେ,
ଘଣ୍ଟ ଘଣ୍ଟାତୁରୀ, ଚାମର କାହାଳୀ,
ବାଜି ବୁଲନ୍ତି ବେଢ଼ାରେ ।୨ ।
ଚଉଧଳ ଦକ୍ଷିଣ ଦ୍ୱାରେ ଆସେ
ସେବକ ହସ୍ତେ ପ୍ରଭୁ ଆସି ବସେ
ବଡ଼ପଣ୍ଡାଏ ଆଳତୀ କରନ୍ତି
ପରିଛା ସ୍ୱୟଂ ଆଳତୀ ଘେନନ୍ତି
ପଶ୍ଚିମକୁ ମୁଖ କରି,
ସେବକ କାନ୍ଧରେ, ପ୍ରଭୁ ବିମାନରେ,
ବେଢ଼ାକୁ ଯାନ୍ତି ବାହାରି ।୩ ।
ଦକ୍ଷିଣାବର୍ତ୍ତରେ ବେଢ଼ା ହୁଅଇ
ନିର୍ଦ୍ଧାରିତ ଦିନରେ ହିଁ ବୁଲଇ
ଦିନକୁ ବୁଲା ହୁଏ ତିନି ଘେରା
ନବାଙ୍କେ ଛଅ ଘେରା ହୁଏ ପୁରା
ଲଡୁବାବା ମନ୍ଦିରରେ,
କେତେ କାଳୁ କାହିଁ, ଚାଲିଛି ଏ ତହିଁ,
ଭକ୍ତ ପାବନ ଅର୍ଥରେ ।୪ ।

ଚନ୍ଦନେ ଏକୋଇଶ ଦିନ ପୁରା
ବେଢ଼ା ହୁଏ ମାତ୍ର ଗୋଟିଏ ଘେରା
ନବାଙ୍କେ ବୃଷଭ ଚାରି ପାଖରେ
ପରିକ୍ରମା ମନ୍ଦିରର ଭିତରେ
କରନ୍ତି ଚନ୍ଦ୍ରଶେଖର,
ପତିତ ପାବନ, ଯାତ୍ରାରେ ଈଶାନ,
ହୁଅନ୍ତି ସଦା ବାହାର ।୫ ।
ବେଢ଼ା ହୋଇଲେ ଚତୁର୍ଦ୍ଦଶୀ ଦିନ
ମହାଦୀପ ମନ୍ଦିରର ଶୀର୍ଷେଣ
ଜାଳେ ମହାଦୀପ ସେବକ ଯାଇ
ନୟାଗଡ଼ ରାଜା ମଙ୍ଗଳ ଗାଇ
ଘଣ୍ଟ କାହାଳୀ ବାଜଇ,
ଅତି ମନୋହର, ଶ୍ରୀଚନ୍ଦ୍ରଶେଖର,
ଦିଶନ୍ତି ବିମାନେ ଥାଇ ।୬ ।
ନବାଙ୍କ ଦିନ ଅଧିକ ଛଥର
ବେଢ଼ା ହୁଅଇ ଲଡୁବାବାଙ୍କର
ମନ୍ଦିର ପରିକ୍ରମା ନ ହୋଇଣ
ହୁଏ ପାଟ ବୃଷଭ ପ୍ରଦକ୍ଷିଣ
ବଡ଼ପଣ୍ଡା ହସ୍ତେ ଥାଇ,
ବେଢ଼ା ହେବା ଦିନ, ନାମ ସଂକୀର୍ତ୍ତନ,
ଭକ୍ତ ହୃଦୟ ମୋହଇ ।୭ ।
ବେଢ଼ା ଯେବେ ଥାଏ ଯାତ୍ରାଙ୍ଗୀ ଦିନ
ଯାତ୍ରାଙ୍ଗୀଆ ଖୁସି ହୁଅନ୍ତି ମନ
ବେଢ଼ାକୁ ଥାଆନ୍ତି ରହି ଅନାଇଁ
ବେଢ଼ା ପୂର୍ବେ ବନ୍ଦାପନା ହୁଅଇ
ବେଢ଼ାରେ ଭାଗ ନିଅନ୍ତି,
ପ୍ରଭୁଙ୍କ ବିମାନ, ସାଥିରେ ନାଚିଣ,
ପ୍ରଦକ୍ଷିଣ କରିଥାନ୍ତି ।୮ ।
ଜାଗର ବେଢ଼ା ଶିବରାତ୍ରୀ ଦିନ
ମନ୍ଦ ମନ୍ଦ ଚାଲି ଦିଶେ ଶୋଭନ
ଜାଗର ଉପାସିଆ ଯେତେ ଭକ୍ତ
ଜଣାନ୍ତି ବେଢ଼ା ବେଳରେ ଆରତ
ଲଡୁବାବା ଆଶୁତୋଷ,
ଯିଏ ଯାହା ଚିନ୍ତେ, ନିଜ ନିଜ ଚିତ୍ତେ,
ଦିଅନ୍ତି ହୋଇ ସନ୍ତୋଷ ।୯ ।

ସେ ଦିନ ବେଢ଼ା ବେଳେ ଯେଉଁ ଭକ୍ତ
ଅଧିଆ ପଡ଼େ ସ୍ଥିର ରଖି ଚିତ୍ତ
ତତ୍କାଳେ ତା ଡାକ ପ୍ରଭୁ ଶୁଣନ୍ତି
ମନଲାଖି ଫଳ ତାକୁ ଦିଅନ୍ତି
ଉତ୍‌ଫୁଲ୍ଲିତ ପ୍ରଭୁ ମନ,
ମାଗୁଣିକୁ ଶୁଣି, ଉମା ମଥାମଣି,
ଦିଅନ୍ତି ନୋହି କୃପଣ ।୧୦।

ବେଢ଼ା ସମୟେ ପତିତ ପାବନ
ରୂପ ପ୍ରଭୁ କରିଥାନ୍ତି ଧାରଣ
ବିମାନ ଆଗେ ପରିଛା ଚାଲନ୍ତି
ହସ୍ତେ ଦଣ୍ଡ ଧାରଣ କରିଥାନ୍ତି
ହରିବୋଲ ହୁଳହୁଳି,
କର୍ଣ୍ଣେ ଶବଦରେ, ହୃଦୟରେ ଭରେ,
ଭକ୍ତି ରସର କାକଳୀ ।୧୧।

ବେଢ଼ା ହୁଅଇ ଦୁଇ ପ୍ରକାରର
ଦିନ ବେଳା ବେଢ଼ା ଆଉ ରାତିର
ରାତ୍ରୀ ବେଢ଼ା ହୁଏ ଚତୁର୍ଦ୍ଦଶୀରେ
ଆଉ ସବୁ ବେଢ଼ା ହୁଏ ଦିନରେ
ପୁରା ଏକୋଇଶ ଦିନ,
ହୁଏ ମାତ୍ର ଥରେ, ଆଳତୀର ପରେ,
ତାପରେ ହୁଏ ଚନ୍ଦନ ।୧୨।

ପର୍ବ ଦିନ ମାନଙ୍କର ବେଢ଼ାରେ
ଭକତ ଆସନ୍ତି ବହୁ ସଂଖ୍ୟାରେ
ପ୍ରଭୁଙ୍କ ବେଢ଼ାରେ ଯୋଗ ଦିଅନ୍ତି
ସାଯୁଜ୍ୟ ମୁକ୍ତି ସାକ୍ଷାତ ଲଭନ୍ତି
ବେଢ଼ା ଦୃଶ୍ୟ ମନୋରମ,
ହୃଦୁ ଦୁଃଖ ନେଇ, ଆନନ୍ଦ ଭରଇ,
ପ୍ରଭୁ ଲୀଳା ଅନୁପମ ।୧୩।

ଲଡୁବାବା ପ୍ରଭୁ ଉମାଙ୍କ ପତି
ପାଦରେ ତାଙ୍କର ମୋର ପ୍ରଣତି
ପ୍ରଦକ୍ଷିଣ ଯେ ତାହାଙ୍କ ବେଢ଼ାରେ
ଭକତ ଶହେ ଆଠବାର କରେ
ଦଣ୍ଡ ପ୍ରଣାମେ ବା ଚାଲି,
ପ୍ରଭୁ ତା ଝୋଲିରେ, ସଉଭାଗ୍ୟ ଭରେ,
ସର୍ବ ଦୋଷତାର ଭୁଲି ।୧୪।

ମୋ ପ୍ରଭୁ ଅଟନ୍ତି ଭକତ ପ୍ରିୟ
ଭକ୍ତହୃଦେ ସେ କରନ୍ତି ବିଜୟ
ଭକ୍ତର ଭକ୍ତିରେ ହୋଇ ବିଭୋର
ଦେଇ ପାରନ୍ତି ସର୍ବସ୍ୱ ତାଙ୍କର
ଦେବାରେ ନାହିଁ କାର୍ପଣ୍ୟ,
ସେହି ଭକ୍ତ ପ୍ରାଣ, ପ୍ରଭୁ ତ୍ରିଲୋଚନ,
ଛନ୍ଦା ଚରଣେ ପ୍ରଣାମ ।୧୫।





# ଅଷ୍ଟବିଂଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରରେ ମହାଦୀପ ଓ ଶାଢ଼ୀ ବାହାରିବା ନୀତି ବର୍ଣ୍ଣନ)

ନମସ୍ତେ ହେ ପ୍ରଭୁ ଲଡୁକେଶ୍ୱର
ବଳିଛି ମନ ପ୍ରଭୁ ଦୟାକର
ତୁମ୍ଭରି ଲୀଳା ବର୍ଣ୍ଣନ କରିବି
ମହାଦୀପ କଥା ଗୀତେ କହିବି
କରୁଣା ହେଲେ ତୁମର,
ଭକତେ ଶୁଣିବେ, ଭକତେ ଗାଇବେ,
ଜାଣିବେ ଲୀଳା ତୁମର ।୧ ।
ମହାଦୀପ ବୋଲି ଯାରେ କହନ୍ତି
ଭକ୍ତେ ଚନ୍ଦ୍ର ଦୀପ ନାମେ ଜାଣନ୍ତି
ମାଟି ସରାରେ ବାଣ ଦାରୁ ଦେଇ
ଏହି ବାଣଟି ତିଆରି ହୁଅଇ
ବାଣ ଏହି ଚମତ୍କାର,
ଦେଖିଣ ଭକତ, ହୁଏ ଆନନ୍ଦିତ,
ଦେଖାଯାଏ ବହୁ ଦୂର ।୨ ।
ମହାଦୀପ ଯୋଗାଣିଆ ସେବକ
ତିଆରି କରି ଯୋଗାଏ ଯେତକ
ମହାଦୀପ ସେବକ ତାକୁ ନେଇ
ଦେଉଳ ଶୀର୍ଷେ କୌଶଳେ ଚଢ଼ଇ
ଆବଶ୍ୟକ ଅନୁସାରେ,
ବାଣକୁ ଲଗାଏ, ଧୈର୍ଯ୍ୟେ ସେଥେ ଥାଏ,
ପ୍ରଭୁଙ୍କର କାର୍ଯ୍ୟ କରେ ।୩ ।
ପ୍ରତିମାସେ ଦୁଇ ଚତୁର୍ଦ୍ଦଶୀରେ
ବେଢ଼ା ଯେବେ ହୁଏ ରାତ୍ରି ବେଳାରେ
ପ୍ରତିଘେରା ବେଢ଼ା ସମ୍ପୂର୍ଣ୍ଣ ହେଲେ
ଠାକୁର ଉତ୍ତର ଦିଗକୁ ଗଲେ
ମହାଦୀପ ଲଗାହୁଏ,
ଭକ୍ତ ମନ ଖୁସି, ସେବକ ବି ଖୁସି,
ରାଜା ଯୁଗ କଥା ଇଏ ।୪ ।

ମହାଦୀପ ଯେତେବେଳେ ଲାଗଇ
ସେବକ ମନ୍ଦିର ଚୂଡ଼ାରେ ଥାଇ
ରାଜାଙ୍କ ମଙ୍ଗଳ କାମନା କରି
ମଙ୍ଗଳ ବାକ୍ୟକୁ ଉଚ୍ଚେ ଉଚ୍ଚାରି
ଦିଏ ଜୟ ଜୟ ଧ୍ୱନି,
ପ୍ରଭୁ କୃପାବଳେ, ସର୍ବ ପ୍ରଜା କୁଳେ,
ସୁଖେ ବସନ୍ତି ଅବନୀ ।୫ ।
ଜାଗର ଦିନ ମହାଦୀପ ପର୍ବ
ବରଷ ଯାକରେ ଅଟେ ଅପୂର୍ବ
ଉପାସିଆ ଭକ୍ତେ ଜାଳି ଜାଗର
ବସନ୍ତି ଚାହିଁ ରହି ଉଜାଗର
ମହାଦୀପ ଉଠିଗଲେ,
ବ୍ରତକୁ ଭାଙ୍ଗନ୍ତି, ପଣାଦି ସାରନ୍ତି,
ସଦନେ ସର୍ବେ ଚଳନ୍ତି ।୬ ।
ଦେବାଧି ଦେବ ପ୍ରଭୁ ମହେଶ୍ୱର
ରାଜାଧି ରାଜ ଶ୍ରୀଲଡ୍ଡୁକେଶ୍ୱର
ପର୍ବ, ଭୋଗ, ନୀତି, ଠାଣିବାଣୀରେ
ସବୁକାର୍ଯ୍ୟ ହୁଏ ସମାରୋହରେ
ରାଜା ସେବାରେ ଯେପରି,
ଶ୍ରେଷ୍ଠ ଦ୍ରବ୍ୟ ଯେତେ, ଦିଅନ୍ତି ଭକତେ,
ବାବା ନାମକୁ ସୁମରି ।୭ ।
ବାବାଙ୍କ ଠାରେ ପାଟ ଶାଢ଼ୀ ଲାଗେ
ପିନ୍ଧାନ୍ତି ସେବକେ ପ୍ରଭୁଙ୍କୁ ବାଗେ
ଏହି ପାଟଶାଢ଼ୀ ଉଲାଗି ପରେ
ପଠା ହୁଏ ରାଜା ରାଜବାଟିରେ
ରାଜତନ୍ତ୍ର ସମୟରୁ,
ଏ ନୀତି ଚାଲିଛି, ଶାଢ଼ୀ ବାହାରୁଛି,
ଲଡୁବାବା ମନ୍ଦିରରୁ ।୮ ।
ନୟାଗଡ଼ ରାଜା ତାଙ୍କ ଗଡ଼ରେ
ରକ୍ଷୀ ପର୍ବତର ପାଦ ଦେଶରେ
ରାଜ ପ୍ରସାଦ ରହିଛି ତାଙ୍କର
ପୂଜକ ନିଅନ୍ତି ସେହି ଠାବର
ବିରାଟ ପଟୁଆରରେ,
ପ୍ରସାଦ ରୂପରେ, ଦିଅନ୍ତି ରାଜାରେ,
ରାଜା ଘେନନ୍ତି ଭକ୍ତିରେ ।୯ ।

ଯେଉଁ ଶାଢ଼ୀ ରାଜାଙ୍କୁ ଦିଆଯାଏ
ରାଜା ତାକୁ ମାରି ମୁଣ୍ଡିଆଟିଏ
ପଗଡ଼ି କରିଣ ତାକୁ ପିନ୍ଧଇ
ସୁଖରେ ପ୍ରଜାମାନଙ୍କୁ ପାଳଇ
ଏବେ ନାହିଁ ରାଜତନ୍ତ୍ର,
ନୀତିଟି ଚାଲିଛି, ପରମ୍ପରା ଅଛି,
ଏହି ମନ୍ଦିରେ ସ୍ୱତନ୍ତ୍ର ।୧୦।
ରାଜତନ୍ତ୍ର ଉଠିଗଲା ଦିନରୁ
ଶାଢ଼ୀ ପଠାଯାଉ ନାହିଁ ମନ୍ଦିରୁ
ରାଜା ଶାସନ ଯେଣୁ ନାହିଁ କାହିଁ
ରାଜବାଟିକୁ ଶାଢ଼ୀ ଯାଉ ନାହିଁ
ଶାଢ଼ୀ କିନ୍ତୁ ବାହାରୁଛି,
ତିନି ଆଙ୍ଗୁଳିର, କପଡ଼ା ପାଟର,
ନୀତିରେ ଲାଗି ହେଉଛି ।୧୧।
ତିନିଚାରି ଆଙ୍ଗୁଳିର ଖଣ୍ଡିଏ
ପାଟକନା ପ୍ରଭୁଙ୍କୁ ଲାଗି ହୁଏ
ସାଙ୍କେତିକ ରୂପେ ବୋଲାଏ ଶାଢ଼ୀ
ଲାଗି ହୁଏ ପରବ ଥିଲେ ପଡ଼ି
କାର୍ଯ୍ୟାଳୟକୁ ଯାଅଇ,
ଲାଗିହେବା ପରେ, ପ୍ରଭୁଙ୍କ ପାଖରେ,
ଗୋଦାମଘରେ ରୁହଇ ।୧୨।
ସପ୍ତପୁରୀ ଅମାବସ୍ୟା ତିଥିରେ
ଧନୁ ଓ ମକର ସଂକରାନ୍ତିରେ
ଯମ ଦ୍ୱିତୀୟା ବସନ୍ତ ପଞ୍ଚମୀ
ଦୋଳପୂର୍ଣ୍ଣିମା ଓ ଅଶୋକାଷ୍ଟମୀ
ଶୀତଳ ଷଷ୍ଠୀ ଦିନରେ,
ଶିବରାତ୍ରି ଦିନ, ମିଶି ନବ ଦିନ,
ମନ୍ଦିରୁ ଶାଢ଼ୀ ବାହାରେ ।୧୩।
ରାଜା ସଂମ୍ପର୍କୀତ ଏ ନୀତି ଦୁଇ
ଲଡୁବାବା ମନ୍ଦିରରେ ହୁଅଇ
ପରମ୍ପରା କ୍ରମେ ଚଳି ଆସୁଛି
ରାଜତନ୍ତ୍ରକୁ ମନେ ପକାଉଛି
ପ୍ରଭୁ ମୋ ଅଟେ ମହାନ,
ନୀତି ଯେଉଁପରି, ପର୍ବ ସେହିପରି,
ସାରା ସଂସାରେ ଅନନ୍ୟ ।୧୪।

ସାରା ସଂସାରରେଏହି ମନ୍ଦିର
ନିଆରା ରୀତି ଓ ନୀତି ଏହାର
ଲିଙ୍ଗମାନଙ୍କର ଏ  ମହାରାଜା
କ୍ଷେତ୍ରମାନଙ୍କ ମଧ୍ୟରେ ଏ ରାଜା
            ସେବା ଓ ପୂଜା ପଦ୍ଧତି,
ନିଆରାଏହାର, ପାଦରେ ତାହାର,
                    ଜଣାଉ ଅଛି ପ୍ରଣତି ।୧୪।





# ଊନତ୍ରିଂଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରକୁ ଘେରି ରହିଥିବା ଶିବ ମନ୍ଦିର ଗୁଡ଼ିକ ସଂପର୍କରେ ବର୍ଣ୍ଣନ)

ଲଡୁବାବା ମନ୍ଦିରକୁ ଘେରିଣ
ଅଛି ଯେତେ ଶଙ୍କରଙ୍କ ଆସ୍ଥାନ
ସର୍ବେ ତାଙ୍କର ଏକ ଏକ ରୂପ
ଶିବ ଶଙ୍କରଙ୍କର ପ୍ରତିରୂପ
ଶକ୍ତି ପୁଞ୍ଜ ଆକାରରେ,
ରହି ନବଦୁର୍ଗେ, ଏହି ଲିଙ୍ଗ ବର୍ଗେ,
ମୁକ୍ତି ଦିଅନ୍ତି ଭକ୍ତରେ ।୧ ।
ଯନ୍ତ୍ର ଆକାରରେ ହୋଇ ସଜ୍ଜିତ
ଅଛନ୍ତି ଶିବଙ୍କ ଲିଙ୍ଗ ସମସ୍ତ
ଏବେ କହିବା ନାମ ଗୋଟି ଗୋଟି
ନବଦୂର୍ଗେ ଜ୍ୟୋତିର୍ଲିଙ୍ଗ ବାରଟି
ଉଭା ଲିଙ୍ଗ ଏ ସମସ୍ତେ,
ପାର୍ଶଦ ପ୍ରାୟେକ, ଛନ୍ତି ଏକ ଏକ,
ଉଦ୍ଧାରୁଛନ୍ତି ଭକତେ ।୨ ।
ପଞ୍ଚୁସରରେ ଛନ୍ତି ଉଗ୍ରେଶ୍ୱର
ଅଷ୍ଟ ଶମ୍ଭୁଛନ୍ତି ପାର୍ଶ୍ୱେ ତାଙ୍କର
ନଛିପୁର ପାହାଡ଼ର ଶୀର୍ଷରେ
ଧବଳେଶ୍ୱର ଚାହିଁ ପଶ୍ଚିମରେ
ନବଦୂର୍ଗର ଐଶାନ୍ୟେ,
ପତିତ ଉଦ୍ଧାର, କରଣେ ତତ୍ପର,
ରହିଣ ଆନନ୍ଦ ମନେ ।୩ ।
ଲାଠିପଡ଼ା ଚନ୍ଦ୍ରଶେଖରପୁର
କୁସୁମୀ କୂଳେ ନୀଳକଣ୍ଠେଶ୍ୱର
ଗୋଟିସାହି ଜମି ମାଳ ମଧ୍ୟରେ
ରହିଛନ୍ତି ମୁକ୍ତେଶ୍ୱର ଠାକୁରେ
ନିଜ ନିଜ ସ୍ଥାନେ ରହି,
ଭକତ ଜନଙ୍କୁ, ସଂସାରର ପଙ୍କୁ,
ତାରୁଛନ୍ତି ଦୟା ବହି ।୪ ।

ଗୁଣ୍ଡବାରଣରେ କୁସୁମୀ କୂଳେ
କପିଳେଶ୍ୱର ରହିଣ ନିଶ୍ଚଳେ
ଭକତ ଜନ ଆରତ ଶୁଣନ୍ତି
ମନ ଜାଣି ତାଙ୍କୁ ଫଳ ଦିଅନ୍ତି
ଆମ୍ର କୁଞ୍ଜ ମଧ୍ୟେ ବସି,
ସଂସାର ଯାକର, ଦୁଃଖୀ ଲୋକଙ୍କର,
ଦୁଃଖ ନାଶି ଦ୍ୟନ୍ତି ଖୁସି ।୫ ।

ରାବରା ଗ୍ରାମେ ଓଡ଼ଗାଁ ନିକଟ
କୁସୁମୀ କୂଳେ ହୋଇଣ ପ୍ରକଟ
ମଧୁକେଶ୍ୱର ଶାନ୍ତ ପରିବେଶ
ଶୁଣନ୍ତି ଗୁହାରି ଆସେ ଯେ ପାଶ
ମନ କାମନା ପୂରାନ୍ତି,
ଜନ୍ମ ଜନମର, ପାପ ଭକତର,
କ୍ଷଣକେ ଜାଳି ଦିଅନ୍ତି ।୬ ।

ଜାମୁପାଟଣା ଗ୍ରାମର ପାଶରେ
ଶୂଳିଆ ପାହାଡ଼ ପାଦ ଦେଶରେ
ଦ୍ୱିତୀକେଶ୍ୱର ଠାକୁର ଅଛନ୍ତି
ପଶ୍ଚିମେ ମୁଖ କରି ବସିଛନ୍ତି
ନୈସର୍ଗିକ ଶୋଭା ରାଜି,
ବାରେଡ଼ି ନାମରେ, ପ୍ରସିଦ୍ଧ ସ୍ଥାନରେ,
ଶୁଣନ୍ତି ଭକତ ଅର୍ଜି ।୭ ।

ବାହାଡ଼ଝୋଲା ଗହୀର ଭିତରେ
ମହାଦେବ ଫୁଲେଶ୍ୱର ନାମରେ
ମାଳିସାହି ଗ୍ରାମେ ଗତିକେଶ୍ୱର
ଜଳମଧ୍ୟେ ରହି ସଦା ତତ୍ପର
ଡାକିଲେ ଶୁଣନ୍ତି ଦୁଃଖ,
ଫଳ ଫୁଲ ନେଇ, କଷ୍ଟି ଯେ ଆସଇ,
କଷ୍ଟ ଧ୍ୱଂସି ଦ୍ୟନ୍ତି ସୁଖ ।୮ ।

ଗୋବିନ୍ଦପୁରେ ସୋମନାଥେଶ୍ୱର
ପଶ୍ଚିମକୁ ମୁଖ ଅଟେ ତାଙ୍କର
ପାଞ୍ଚଗଡ଼ ମାଳିସାହି ମଧ୍ୟରେ
ସୋମେଶ୍ୱର ଅଧା ନୟାଗଡ଼ରେ
ଯଦୁପୁରେ ସିଂହେଶ୍ୱର,
ନିଜ ନିଜ ଭକ୍ତ, ତାରଣେ ନିଯୁକ୍ତ,
ଦ୍ୱାଦଶାର୍ଦ୍ଧ ମହେଶ୍ୱର ।୯ ।

ଏ ସର୍ବେ ପ୍ରଭୁଙ୍କ ବାହାଘରକୁ
ବିମାନେ ବସି ଶରଣକୁଳକୁ
ଆସୁଥିଲେ ରାଜାଙ୍କ ଆଦେଶରେ
ନିମନ୍ତ୍ରଣ ପାଇ ପ୍ରଭୁ ସେବାରେ
ମେଳନରେ ଯୋଗଦେଇ,
ଭକତ ମନରେ, ଆନନ୍ଦ ଦେବାରେ,
ଥିଲେ ତତପର ହୋଇ ।୧୦।

ରାଜତନ୍ତ୍ରର ପତନ ହେବାରୁ
ଯୋଗାଯୋଗ ଆଉ ନ ରହିବାରୁ
ଶୀତଳ ଷଷ୍ଠୀ ଶିବ ବିଭାଘରେ
ଆସୁ ନାହାଁନ୍ତି ଆଉ ଏ ଠାକୁରେ
ଦେବତା ଆଖପାଖର,
ଏବେ ଆସୁଛନ୍ତି, ମେଳନେ ବସନ୍ତି,
ମୋହନ୍ତି ମନ ଭକ୍ତର ।୧୧।

ବିଶ୍ୱନାଥ ଅଛନ୍ତି କରଡ଼ାରେ
ରଘୁନାଥପୁର ଶାସନ ଠାରେ
ଗ୍ରାମର ପୂର୍ବ ପାର୍ଶ୍ୱରେ ଆସ୍ଥାନ
ବ୍ରାହ୍ମଣେ କରୁଛନ୍ତି ଆରାଧନ
ଭକ୍ତ କାମନା ପୂରାନ୍ତି,
କାର୍ତ୍ତିକ ମାସରେ, ପୂର୍ଣ୍ଣମୀ ଦିନରେ,
ଭକ୍ତେ ଯାତ୍ରା କରୁଛନ୍ତି ।୧୨।

ରାମେଶ୍ୱର ଛନ୍ତି ବଡ଼ପୁଟରେ
ସୁନ୍ଦର ସର ରହିଛି ପାର୍ଶ୍ୱରେ
ଜଳାଭିଷେକ କରେ ଯେଉଁ ଭକ୍ତ
ନାଶନ୍ତି ତାର ଯେତକ ଆରତ
ଭକ୍ତ ପ୍ରିୟ ଆଶୁତୋଷ,
ଭକତ ଦୟିନୀ, ହୃଦୟରେ ଘେନୀ,
ପୂରାନ୍ତି ତାହାର ଆଶ ।୧୩।

ପଞ୍ଚିରିଡ଼ା ଗ୍ରାମେ ବାଲୁଙ୍କେଶ୍ୱର
ଗ୍ରାମର ଉତ୍ତରେ ତାଙ୍କ ମନ୍ଦିର
ବ୍ରାହ୍ମଣ ସେବକେ ତାଙ୍କୁ ପୂଜନ୍ତି
ମନ ଜାଣି ପ୍ରଭୁ ପାଦେ ଖଟନ୍ତି
ତାହାଙ୍କର ପ୍ରସାଦରେ,
ଗ୍ରାମବାସୀମାନେ, ଅଛନ୍ତି ସମ୍ପନ୍ନେ,
ସମୃଦ୍ଧି ସବୁରି ପୁରେ ।୧୪।

ମାନପୁରେ ଛନ୍ତି ଘଟକେଶ୍ୱର
ତୁଆଣ୍ଟ ସଲିଳା ତଟ ଦେଶର
ଫାଲଗୁନ ମାସ ପୂର୍ଣ୍ଣମୀ ଦିନ
ଭକ୍ତେ ଯାତ୍ରା କରନ୍ତି ଆୟୋଜନ
ଆସ୍ଥାନ ପାତି ଅଛନ୍ତି,
ବିପଦ ଆପଦ, ପଡ଼ିଲେ ପ୍ରମାଦ,
ଭକ୍ତକୁ ଅଭୟ ଦ୍ୟନ୍ତି । ୧୫ ।

ଚଡ଼ୟାପଲ୍ଲୀରେ ବାଲୁଙ୍କେଶ୍ୱର
ଶିବଙ୍କ ବାନାମ୍ବର ଅବତାର
ଚଇତ୍ର ମାସରେ ଆସି ଭକତେ
ଯାତରା ଭିଆନ୍ତି ଦିବସ କେତେ
ନିଷ୍ଠାରେ ପାରଣା କରି,
ପ୍ରଭୁ ବାନାମ୍ବର, ଦଣ୍ଡୁଆ ଭକ୍ତର,
ଦୁଃଖକୁ ନିଅନ୍ତି ହରି । ୧୬ ।

ସିଙ୍ଗାରପୁର ଗ୍ରାମେ ଭକ୍ତିଶ୍ୱର
ପହାଡ଼ ରହିଛି ପାର୍ଶ୍ୱରେ ତାର
ନୈସର୍ଗିକ ଶୋଭା ଚତୁର୍ଦ୍ଦିଗରେ
ଭକ୍ତର ମନକୁ ତତ୍‌କ୍ଷଣେ ହରେ
ଏକାନ୍ତ ସାଧନା ପାଇଁ,
ପୀଠ ପ୍ରଭୁଙ୍କର, ଅଟେ ଚମତ୍କାର,
ତ୍ୱରିତେ ଫଳ ମିଳଇ । ୧୭ ।

ଗ୍ରାମଟିର ନାମ ଯେ ବରସାହି
ସିଦ୍ଧେଶ୍ୱର ତହିଁ ଅଛନ୍ତି ରହି
ଅନନ୍ୟ କ୍ଷମତାର ଅଧିକାରୀ
ଡାକିଲେ ଶୁଣନ୍ତି ତ୍ରିଶୁଳଧାରୀ
ଭକ୍ତ ଡାକିଲେ ଭକ୍ତିରେ,
ଆସ୍ଥାନ ତାଙ୍କର, ହୁଏ ଥରହର,
ଦ୍ୟନ୍ତି ଫଳ ଅକାତରେ । ୧୮

କୁସୁମୀ କୂଳେ ଶିଖରପୁରରେ
ଆଙ୍କାଚୌରା ଶିବ ଛନ୍ତି ସେଠାରେ
ବିବାହ ବ୍ରତାଦି ଶୁଭ କାର୍ଯ୍ୟର
ସାକ୍ଷୀ ରୂପେ ଥାନ୍ତି ସେଠି ଶଙ୍କର
ଅସୁରଢ଼ିପା ଗ୍ରାମରେ,
ପ୍ରଭୁ ବୈଦ୍ୟନାଥ, ପାର୍ବତୀଙ୍କ ନାଥ,
ଭକତ କ୍ଲେଶକୁ ହରେ । ୧୯ ।

ବାଉଁଶିଆ ବ୍ରାହ୍ମଣ ଶାସନରେ
ସ୍ୱପ୍ନେଶ୍ୱର ରୂପେ ପ୍ରଭୁ ସେଠାରେ
ଭକତମାନଙ୍କ ମନ କାମନା
ପୂର୍ଣ୍ଣ କରି ଉଡ଼ାଉଛନ୍ତି ବାନା
ମସ୍ତ ସେହି ଭୋଳାବାବା,
ବିବାହୋତ୍ସବରେ, ଚଢ଼ି ବିମାନରେ,
ଯାନ୍ତି ପାଶେ ଲଡୁବାବା ।୨୦।
ଶରଣକୁଳେ ଭିକାରିପଡ଼ାରେ
ରାମେଶ୍ୱର ରହିଛନ୍ତି ପୂର୍ବରେ
ବିଶ୍ୱନାଥ ରୂପେ ବରଡ଼ିହୀରେ
କଣ୍ଟାବଣିଆ ଗ୍ରାମେ ପଶ୍ଚିମରେ
ଶାବିଦେଇପୁର ଗ୍ରାମେ,
ତ୍ରିଶୂଳ ଧାରଣ, କରି ଅବସ୍ଥାନ,
ଭକତ ହୃଦୟେ ରମେ ।୨୧।
ଚନ୍ଦ୍ରକନ୍ଦେଶ୍ୱର ସ୍ୱରୂପେ ଶିବ
ଜଗନ୍ନାଥପୁରରେ ଆବିର୍ଭାବ
ଅକର୍ମ କର୍ମ ଦାୟକ ଈଶ୍ୱର
ଆର୍ତ୍ତି ଆର୍ତ୍ତ ନାଶକ ମହେଶ୍ୱର
ଅଛନ୍ତି ଯୋଗମୁଦ୍ରାରେ,
ଯେ ଯାହା ଚିନ୍ତଇ, ତାକୁ ତାରେ ଦେଇ,
ଥାଆନ୍ତି ଅକାତରରେ ।୨୨।
ଏ ସର୍ବେ ଅଂଶ ଲଡୁବାବାଙ୍କର
ସାମର୍ଥ୍ୟ ବଢ଼ାଉଛନ୍ତି କ୍ଷେତ୍ରର
ଜଗିଛନ୍ତି ପଦ୍ମ ଦଳ ଆକାରେ
ଲଡୁବାବା ସ୍ଥିତ ତା କେଶରରେ
ସୁଗନ୍ଧ ବିଶରେ ତାର,
ହୋଇ ଆକର୍ଷିତ, ଶୁଦ୍ଧ ଯେ ଭକତ,
ଆସନ୍ତି ପାଶେ ତାଙ୍କର ।୨୩।
ଏପରି ଭକତ ଉଦ୍ଧାର ପାଇଁ
ଯେତେକ ଶମ୍ଭୁ ଅସ୍ଥାନ ଜମାଇ
ଅଛନ୍ତି ଶରଣକୁଳ କ୍ଷେତ୍ରରେ
ଶରଣ ଦିଅନ୍ତି ଅଶରଣରେ
ଚରଣେ ସମସ୍ତଙ୍କର,
କରେ ନମସ୍କାର, ଉମା ମହେଶ୍ୱର,
ଉଦ୍ଧାର କରନ୍ତୁ ମୋର ।୨୪।

# ତ୍ରିଂଶ ପ୍ରକାଶ

(ଲଡୁବାବାଙ୍କ ମନ୍ଦିରକୁ ଘେରି ରହିଥିବା ଅନ୍ୟ ଦେବଦେବୀ
ମନ୍ଦିର ଗୁଡ଼ିକ ସଂପର୍କରେ ବର୍ଣ୍ଣନ)

ବିଭିନ୍ନ ରୂପ ଧରି ଭଗବତୀ
ଭୂଜାପାନ୍ତି ହୋଇ ଗ୍ରାମଦେବତୀ
ଲଡୁବାବାଙ୍କୁ ଘେରି ରହିଛନ୍ତି
ତାଙ୍କର ଶକ୍ତି ରୂପେ ଜଗିଛନ୍ତି
ପ୍ରକାଶୁଛି ତାଙ୍କ ନାମ,
ମା ପାପ ନାଶିନୀ, ଜଗତ ଜନନୀ,
ଚରଣେ କରି ପ୍ରଣାମ ।୧ ।
କୁସୁମୀ କୂଳେ ହରିହରପୁରେ
ମଙ୍ଗଳା ରୂପରେ ବିଜେ ଗ୍ରାମରେ
ଭଣ୍ଡାର ଦେଈ ଓ ବ୍ରାହ୍ମଣୀଦେଈ
ଭଣ୍ଡାର ତଳେ ବୁଢ଼ୀ ନାମ ନେଇ
ବୁଝନ୍ତି ଭକ୍ତ ଦୟିନୀ,
ଯାଇ ଘରେ ଘରେ, ବୁଲି ପୁରେ ପୁରେ,
ମାତା ମୋ ଆର୍ତ୍ତନାଶିନୀ ।୨ ।
ଶରଣକୁଳ ଲକ୍ଷ୍ମୀବଜାରରେ
ଅଛନ୍ତି ମା' ବିରଜାଇ ରୂପରେ
ନରେନ୍ଦ୍ରପୁରେ ରାମଚଣ୍ଡୀ ରୂପେ
ଛନ୍ତି ପୁଣି ନାରାୟଣୀ ସ୍ୱରୂପେ
ଡାକିଲେ ଆତୁର ହୋଇ,
ଦୁଃଖୀକୁ ହରଇ, ଭକ୍ତେ ସୁଖୀ ଦେଇ,
ତତ୍‌କ୍ଷଣେ ଡାକ ଶୁଣଇ ।୩ ।
ମଗରବନ୍ଧେ ମଙ୍ଗଳା ତାରିଣୀ
ନାମ ବହିଛନ୍ତି ମାଆ ବ୍ରାହ୍ମଣୀ
ଆଙ୍ଗସିଙ୍ଗ ଗ୍ରାମେ ମାଆ ମଙ୍ଗଳା
ଶିଖରପୁରରେ ତାରିଣୀ ମେଳା
ହୁଅଇ ସମାରୋହରେ,
ମାଆ ଖୁସି ପାଇଁ, ଭକ୍ତ ପାଶେ ଯାଇ,
ପୂଜଇ ତାର ମନ୍ଦିରେ ।୪ ।

ଅସୁରଢ଼ିପାର ଢିପ ଉପରେ
ଆଙ୍ଗୁଲେଇ ବସିଛନ୍ତି ମନ୍ଦିରେ
ବାଣାସୁରର ଏ ଆରାଧ୍ୟା ଦେବୀ
ଭକ୍ତ ମନ ମୋହେ ତାଙ୍କର ଛବି
ବୁଢ଼ୀ ମା' ଗ୍ରାମଦେବତୀ,
ଗାଆଁମୁଣ୍ଡେ ରହି, ଭକ୍ତେ ଦୟା ବହି,
କୃପାକରେ ଭଗବତୀ ।୫ ।

ସ୍ୱରୂପ ଧରି ବଡରାଉଳିଆ
ସିଙ୍ଗାରପୁରରେ ଅଛନ୍ତି ମାଆ
କୋତରଙ୍ଗରେ ମାତା ରତ୍ନମାଳା
କରୁଛନ୍ତି ମର୍ତ୍ତ୍ୟରେ ଲୀଳା ଖେଳା
ମାତାଏ ଜଗି ଅଛନ୍ତି,
ଲଡୁବାବାଙ୍କର, ଉତ୍ସ ଏ ଶକ୍ତିର,
ଚତୁଃପାର୍ଶ୍ୱରେ ଶୋଭନ୍ତି ।୬ ।

ବୁଢ଼ୀମାଆ ,ମଙ୍ଗଳା, କୁରୁମୁଣୀ
ବଉଳେଇ ପୁଣି ମାତା ବ୍ରାହ୍ମଣୀ
ପଞ୍ଚଶକ୍ତି ରୂପେ ଗୋଡ଼ିପଲ୍ଲୀରେ
ଆଶିଷ ଦିଅନ୍ତି ଭକ୍ତ ଜନରେ
ହାନି ଲାଭ ବୁଝୁଛନ୍ତି,
ବାତ୍ସଲ୍ୟ ସ୍ନେହରେ, ସମସ୍ତ ସଂସାରେ,
ତାଙ୍କ ପରି କେ ନାହାନ୍ତି ।୭ ।

ତାରିଣୀ, ରତ୍ନମାଳା, ଝାଡ଼େଶ୍ୱରୀ
ଚଢ଼ୟାପଲ୍ଲୀ ଗ୍ରାମେ ବିଜେକରି
ମାନପୁର ଗ୍ରାମେ ମାଆ ବାଉତୀ
ଦୁଃଖ ନାଶନରେ ଅଗ୍ରଣି ଅତି
ଶୁଣି ଭକତ ଦୟିନୀ,
ପାଶେ ପହଞ୍ଚନ୍ତି, କଷ୍ଟକୁ ଦହନ୍ତି,
ମାତା ଅଭୟ ଦାୟିନୀ ।୮ ।

ପଞ୍ଚିରିଢ଼ା ଗ୍ରାମେ ବିଜେ ବାଉତୀ
ବଢ଼ପୁଟେ ମା'ବ୍ରାହ୍ମଣୀ ଅଛନ୍ତି
ମଙ୍ଗଳା ରୂପରେ ପାପହାରିଣୀ
ତାରିଣୀ ପାହାଡ଼େ ମାଆ ତାରିଣୀ
ଚତୁଃପାର୍ଶ୍ୱେ ଜଗିଛନ୍ତି,
ଶ୍ରୀ ଲଡୁକେଶ୍ୱର, ପ୍ରଭୁ ମହେଶ୍ୱର,
ନିଶ୍ଚିନ୍ତେ ଯୋଗ କରନ୍ତି ।୯ ।

ଅନ୍ୟାନ୍ୟ ଅନେକ ଦେବତା ଆସି
ଦର୍ଶନ ସକାଶେ ହୋଇ ପ୍ରୟାସୀ
ଆସ୍ଥାନ ଜମାଇ ଏହି କ୍ଷେତ୍ରରେ
ସହର୍ଷେ ଛନ୍ତି ବିଭିନ୍ନ ଗ୍ରାମରେ
ଗୁପ୍ତେ ନିଶାର୍ଦ୍ଧେ ଆସନ୍ତି,
ମନ୍ଦିରେ ଆସିଣ, ପ୍ରଭୁଙ୍କ ଦର୍ଶନ,
କରି ସ୍ୱସ୍ଥାନେ ଫେରନ୍ତି ।୧୦।
ବଡ଼ପୁଟେ ଛନ୍ତି ରବି ଓ ରାମ
ଶନିଦେବ ଆସ୍ଥାନ ଅନୁପମ
ରାଧାକୃଷ୍ଣ ସହ ତୃତୀୟାଦେବ
ପଞ୍ଚିରିଡ଼ାଗ୍ରାମର ସେ ଗୌରବ
ଅଛନ୍ତି ସ୍ୱଲୋକୁ ଆସି,
ତାଙ୍କ ଉପସ୍ଥିତି, ମନେ ଭରେ ଭକ୍ତି,
ଦର୍ଶନେ ଭକତ ଖୁସି ।୧୧।
ଚଢ଼ୟାପଲ୍ଲୀ ଗ୍ରାମେ ବାସୁଦେବ
ରାଧାକୃଷ୍ଣ ଗୌରୀ ପୁତ୍ର ହେରମ୍ବ
ଗୋଡ଼ିପଲ୍ଲୀ ଗ୍ରାମେ ନନ୍ଦନନ୍ଦନ
କୋତରଙ୍ଗ ଗ୍ରାମେ ଦଧିବାମନ
ରହି ଗିରୀ ଗୋବର୍ଦ୍ଧନ,
ପତିତଜନଙ୍କୁ, ପୁଣି ଭକତକୁ,
ଦେଉ ଅଛନ୍ତି ଶରଣ ।୧୨।
ରତ୍ନମାଳା କୋଳରେ ଗିରୀଧାରୀ
ସିଙ୍ଗାରପୁରେ ରାଧା ବଂଶୀଧାରୀ
ଅସୁରଢ଼ିପାରେ ଶ୍ରୀଜଗନ୍ନାଥ
ଶିଖରପୁରରେ ଜଗତନାଥ
ଦଧିବାମନ ରୂପରେ,
ଆସି ରହିଛନ୍ତି, ଡାକ ଶୁଣୁଛନ୍ତି,
ନିଜ ନିଜ ମନ୍ଦିରରେ ।୧୩।
ଭିକାରିପଡ଼ା ଗ୍ରାମେ ଦିବାକର
ସୂର୍ଯ୍ୟ ନାରାୟଣ ନାମ ତାଙ୍କର
ଛାମୁସାହିରେ ରାମ ଚାପଧାରୀ
ନରେନ୍ଦ୍ରପୁରରେ କୁଞ୍ଜବିହାରୀ
ଦର୍ଶନାଭିଳାଷି ହୋଇ,
ଆସ୍ଥାନ ଜମାଇ, ନିଜ ଭକ୍ତ ନେଇ,
କ୍ଷେତ୍ର ବରେ ରହିଛଇଁ ।୧୪।

ହରିହରପୁରେ ଦଧିବାମନ
ଲଡୁବାବାଙ୍କ ଯେତେ ଯାତ୍ରା ମାନ
ସବୁଥିରେ ସୌମ୍ୟେ ଭାଗ ନିଅନ୍ତି
ଯାତ୍ରାଦିରେ ସାହଚର୍ଯ୍ୟ ଦିଅନ୍ତି
ସାଥେ ନେଇ ଭକ୍ତଗଣ,
ଶୀତଳଷଷ୍ଠୀରେ, ଚନ୍ଦନ ଯାତ୍ରାରେ,
ଦୋଳ ଆଦି ଯାତ୍ରାମାନ । ୧୫ ।

ହରିହରପୁର ଯାହାକୁ କହି
ପୂର୍ବୁ ଶରଣକୁଳ ଥିଲା ସେହି
ସରହଦ ମଧ୍ୟେ ଏହି ଗ୍ରାମର
ଥିଲା ଲଡୁବାବାଙ୍କର ମନ୍ଦିର
ଗଉଡ଼ ଏହି ଗାଆଁର
କାଳୀଗାଈ ଯା'ର, ପ୍ରଭୁଙ୍କ ଉପର,
ଦେଉଥିଲା ଯାଇ କ୍ଷୀର । ୧୬ ।

ବାରବାର ପୋଡ଼ିବାରୁ ଏ ଗାଆଁ,
ପୋଡ଼ା ଶରଣକୁଳ ହେଲା ନାଆଁ
ଅଠାଇଶ ସାଲ ବନ୍ଦୋବସ୍ତରେ
ସତାର ଖାଆଁଙ୍କର ଅମଳରେ
ନାମଟି ବଦଳିଗଲା,
ହରି ଏବଂ ହର, ଦୁହିଁଙ୍କର ଘର,
ହରିହରପୁର ହେଲା । ୧୭ ।

ଘୁଞ୍ଚିଗଲା ପଶ୍ଚିମେ ସରହଦ
ସୁଆରସାହିଟି ପଡ଼ିଲା ବାଦ
ଆଠଟି ପାଟଣା ସାଥେ ମିଶାଇ
ଶରଣକୁଳ ତାର ନାମ ଦେଇ
ନକସା ବଦଳିଗଲା,
ପ୍ରତିବଦଳରେ, ହରିହରପୁରେ,
ସମ୍ମାନତକ ମିଳିଲା । ୧୮ ।

ଯୁଗ ଗଲା ଚାଲି କଥା ରହିଛି
ପ୍ରଶାସନ ତାକୁ ସଦା ମାନୁଛି
ସେବକେ ଦେଉଅଛନ୍ତି ସମ୍ମାନ
ଖୁସି ହେଉଛନ୍ତି ଦଧିବାମନ
ହରିହରଙ୍କର ଭେଟ,
ହୁଏ ବାରବାର, ମନ ଭକତର,
ଦର୍ଶନେ ସଦା ଉଚ୍ଛାଟ । ୧୯ ।

ଦୁଆର ଭୋଗ ସୁଆର ସାହିରେ
ଦଧିବାମନ ଖାଆନ୍ତି ଠାଣୀରେ
ସେ ସାହିକୁ କେବେ ଲଡୁକେଶ୍ୱର
ଯାଆନ୍ତି ନାହିଁ ବି ଥରେ ମାତର
ତାହାଙ୍କର ସମ୍ମାନରେ,
ଚାଳିମଣ୍ଡପରେ, ଚାଳିଭୋଗ ପରେ,
ଯାଆନ୍ତି ଅନ୍ୟ ସାହିରେ ।୨୦।
ଲଡୁବାବା ମନ୍ଦିରେ ବଡ଼ଭାଇ
ମାନ୍ୟତା ଏହାଙ୍କୁ ସଦା ମିଳଇ
ପର୍ବ ଦିନେ ପହଞ୍ଚିଲେ ମନ୍ଦିରେ
ଲଡୁବାବା ବାହାରନ୍ତି ଯାତ୍ରାରେ
ରାଜା ଆଦେଶ ରହିଛି,
ତାହାକୁ ମାନନ୍ତି, ଅପେକ୍ଷା କରନ୍ତି,
ଆଜି ଯାଏଁ ତା ଚାଲିଛି ।୨୧।
ଶୀତଳଷଷ୍ଠୀ ଶିବ ବିବାହରେ
ନିମନ୍ତ୍ରଣ ଯାଏ ସବୁ ମନ୍ଦିରେ
ସାଜସଜାରେ ସର୍ବେ ବେଶ ହୋଇ
ବରଯାତ୍ରୀ ରୂପରେ ଯୋଗ ଦେଇ
ଯାତ୍ରାର ମଜା ନିଅନ୍ତି,
ଷଷ୍ଠୀ ମେଳନରେ, ବସି ଆନନ୍ଦରେ,
ଭକ୍ତ ମନକୁ ମୋହନ୍ତି ।୨୨।
ମେଳନେ ଭକତ ମେଳା ଲାଗଇ
ପ୍ରଭୁମାନଙ୍କ ଦରଶନ ପାଇଁ
ଭାଗ୍ୟ ଥିଲେ ମିଳେ ଏକା ସଙ୍ଗରେ
ପ୍ରଭୁଙ୍କ ଦରଶନ ସମୁହରେ
ଶୋଭା ମନକୁ ଆକର୍ଷେ,
ଛୁଆ ପିଲା ନେଇ, ଭକତ ଦେଖଇ,
ତା ମନ ନାଚେ ହରଶେ ।୨୩।
ପ୍ରଭୁ ଶିବ ସିନା ଏକାନ୍ତବାସୀ
ଲଡୁବାବା ଗହଳିରେ ବିଶ୍ୱସୀ
ଭକତ ଉଦ୍ଧାରେ ସଦା ଜାଗ୍ରତ
ଭକତ ଭକ୍ତିରେ ହୁଅନ୍ତି ପ୍ରୀତ
ତା ପାଦେ ଥାଉ ମୋଶିର,
ଆଶିଷ ତାହାର, ଦୁଃଖ କରୁ ଦୂର,
ମୋ ପରି ଦୀନ ଜନର ।୨୪।



# ଏକତ୍ରିଂଶ ପ୍ରକାଶ

(ରହସ୍ୟର ରତ୍ନାକର ପ୍ରଭୁ ଲଡ୍ଡୁବାବାଙ୍କୁ ନେଇ ରହି ଥିବା
ରହସ୍ୟ ଗୁଡ଼ିକ ସଂପର୍କରେ ବର୍ଣ୍ଣନ)

ରହସ୍ୟମୟ ପ୍ରଭୁ ଲଡ୍ଡୁବାବା
ତାଙ୍କର ସମ ଆଉ କେ ଅଛି ଅବା
ରହସ୍ୟର ଅଟନ୍ତି ରତ୍ନାକର
ଭେଦ କରିବା ଅଟେ କାଠିକର
ନାମେ ରହସ୍ୟ ଯେପରି,
ଆସ୍ଥାନ ତାଙ୍କର, କାମ ପ୍ରଭୁଙ୍କର,
ରହସ୍ୟମୟ ସେପରି ।୧ ।
ଲିଙ୍ଗ ଉପରେ ରହିଛି ଗୋଷ୍ପାଦ
ଦର୍ଶନେ ଯାହାର ଛାଡ଼େ ପ୍ରମାଦ
ଗୋଡ଼ି ଟଙ୍କାଟିଏ ଦେଲେ ପକାଇ
ଶବ୍ଦ କରି କେଣେ ଯାଏ ଉଭେଇ
ଏ ଅଟେ ରହସ୍ୟ ଏକ,
ସମର୍ଥ ଭେଦନେ, ଲାଗି କେତେ ଜନେ,
କ୍ଷମ ହୋଇନି କେ ଏକ ।୨ ।
ଜଳଶାୟୀ ନୀତି କରିଲା ବେଳେ
ଘଟଣାଘଟେ ଏହ୍ନେ ବେଳେବେଳେ
ସବୁଜଳ ଯାଅଇ ଶୋଷୀ ହୋଇ
ପାଦୁକ କୁଣ୍ଡକୁ ଟୋପେ ନ ଯାଇ
ସଦା ଜଳ ଗୋଷ୍ପାଦରେ,
ରହିଥାଏ ଭରି, କେଉଁଠାରୁ ଝରି,
ପାଦୁକ ମିଳେ ଭକ୍ତରେ ।୩ ।
ଗୋଡ଼ ଘଷିଲେ ଶିଳା ସରିଯାଏ
ଯାହା ପୋଖରୀର ତୁଠରେ ଥାଏ
ଲଡ୍ଡୁବାବାଙ୍କର ଲିଙ୍ଗ ଉପରେ
ତିନି କଦଳୀ ଟଭା ଅଁଳାଦିରେ
ପ୍ରତ୍ୟହ ହୁଏ ଘର୍ଷଣ,
ଲିଙ୍ଗଟି ତଥାପି, ରହିଛି ଅଦ୍ୟାପି,
ନ ହୋଇ କରି ଚିକ୍କଣ ।୪ ।

ଲଡୁକେଶ୍ୱରଙ୍କର ରତ୍ନଘର
ରହିଅଛି ମୁଖଶାଳା ମଧର
ଆଜି ଯାଏଁ ତାହା ହୋଇନି ଖୋଲା
ଖୋଲିବାକୁ ଯେବେ ଆଦେଶ ଦେଲା
ସତାର ଖାଆଁ ଏଜେଣ୍ଟ,
ସର୍ପ ଭୟଙ୍କର, କଳା ସୁସୁକାର,
ଭାଙ୍ଗିଗଲା ତା'ର ଆଣ୍ଟ ।୫ ।

ମନ୍ଦିର ବାଙ୍ଗି ସହ ପୋଖରୀର
ରହସ୍ୟମୟ ସମ୍ପର୍କ ଦ୍ୱୟର
ଉଭୟର ଜଳର ରଙ୍ଗ ସ୍ୱାଦ
ନୁହଁଇ ଏକା ରହିଛି ପ୍ରଭେଦ
ଉଭୟ ଜଳ ପତନ,
କମିଲେ କମଇ, ବଢ଼ିଲେ ବଢ଼ଇ,
ରହଇ ସଦା ସମାନ ।୬ ।

କିମ୍ବଦନ୍ତୀ ଜନ ପ୍ରବାଦ ଅଛି
ବାଣାସୁର ଗୁମ୍ଫା ଏବେ ବି ଅଛି
ପ୍ରଭୁଙ୍କ ପାଖରୁ ସୁଡ଼ଙ୍ଗ ଦେଇ
ଗୁମ୍ଫା ମଧକୁ ପଥ ଅଛି ରହି
ଇଏ ବି ରହସ୍ୟ ଅଟେ,
ଜାଣି ନାହିଁ କେହି, ରହିଛି ତା କାହିଁ,
ଅବା ଏ ମିଥ୍ୟା କଥାଟେ ।୭ ।

ସମ ଦିବସ ମାର୍ଚ୍ଚ ଏକୋଇଶ
ପୁଣି ସେପ୍ଟେମ୍ବର ମାସ ତେଇଶ
ଏହି ଦିନେ ସୂର୍ଯ୍ୟଙ୍କର କିରଣ
ଲିଙ୍ଗ ଉପରେ ହୋଇଣ ପତନ
ବର୍ଣ୍ଣାଳୀ ସୃଷ୍ଟି କରଇ,
ରହସ୍ୟ ଏହାର, ରହସ୍ୟ ପ୍ରଭୁର,
ସମାଧାନ ନାହିଁ ହୋଇ ।୮ ।

ଉଣଶି ଶହ ବାସ୍ତରୀ ସାଲରେ
ପ୍ରଳୟଙ୍କରୀ ବନ୍ୟା ସମୟରେ
ବେଢ଼ାଟି ଜଳମଗ୍ନ ହୋଇ ଥିଲା
ଗୁହାରିଆ ଜଳରେ ଭାସୁଥିଲା
ଦିଶୁଥିଲା ଯେହ୍ନେ ଶବ,
ସାରା ମନ୍ଦିରରେ, ସେବକ ମଧରେ,
ଚିନ୍ତା ନୀତି କେହ୍ନେ ହେବ ।୯ ।

ବଡ଼ ଦେଉଳ ଉପରୁ ଗୋଟିଏ
ହଠାତ୍ ଉଡ଼ି ଆସି ପାରାଟିଏ
ପଡ଼ିଲା ତାପରେ ହୋଇ ବାଡ଼େଇ
ତତ୍କ୍ଷଣେ ଅଧିଆ ଉଠିଲା ଜିଇଁ
ପାରା ହାରିଲା ଜୀବନ,
ସେବକେ ଦେଖିଣ, ଆଶ୍ଚର୍ଯ୍ୟ ହୋଇଣ,
କହିଲେ ହେ ପ୍ରଭୁ ଧନ୍ୟ ।୧୦।

ଉଣେଶି ଶହ ପଞ୍ଚାନବେ ସାଲ
ଗଳାକଟା ଗୁହାରିଆଟି ଭଲ
କଟାଦାଗଟିଏ କେବଳ ଥିଲା
ହୁକୁମ ପାଇଣ ଗୃହେ ଚଳିଲା
ସର୍ବେ କଲେ ଧନ୍ୟ ଧନ୍ୟ,
ଶ୍ରୀଲଡ଼ୁକେଶ୍ୱର, ପ୍ରଭୁ ମହେଶ୍ୱର,
ଧନ୍ୟ ତୁମେ ଭଗବାନ ।୧୧।

ଆଉ ଏକ ଗୁହାରିଆ ଆସିଣ
ଜିଭ ଦୁଇ ଗଡ଼ କରି ଫିଙ୍ଗିଣ
ଅଧିଆ ପଡ଼ିଲା ବାବା ମନ୍ଦିରେ
ବାବା ତାର ଡାକ ଶୁଣି ସଧିରେ
ହୁକୁମ ଦେଲେ ତତ୍କ୍ଷଣେ,
ଜିଭ କଅଁଳିଲା, ସ୍ପଷ୍ଟ ସେ କହିଲା,
ଆଶ୍ଚର୍ଯ୍ୟ ସମସ୍ତ ଜନ ।୧୨।

ରହସ୍ୟ ଏ ଅଟେ ଅଭକ୍ତ ପାଇଁ
ଭକ୍ତ ଏହାର ରହସ୍ୟ ଜାଣଇ
ଯୋଗେଶ୍ୱର ପ୍ରଭୁ ଜଗତପିତା
ଜଣା ତାଙ୍କୁ ସଂସାରର ବାରତା
ଅକର୍ମେ କର୍ମ ଦିଅନ୍ତି,
ଅସମ୍ଭବ ଯାହା, କରନ୍ତି ସେ ତାହା,
ସମସ୍ତ ପାପ ହରନ୍ତି ।୧୩।

ଜଳେ କ୍ଷୀରେ ଅବା ଗଙ୍ଗା ନୀରରେ
ମହୁ ଆଖୁ ରସ ତିଳ ତୈଳରେ
ଲଡ଼ୁବାବାଙ୍କୁ ଅଭିଷେକ କଲେ
ଭକ୍ତ ମନବାଞ୍ଛା ପୂରଇ ଭଲେ
ଶୀଘ୍ର ସେ ତୋଷ ହୁଅନ୍ତି,
ପାର୍ବତୀଙ୍କ ପତି, ପ୍ରଭୁ ପଶୁପତି,
ସକଳ କଷ୍ଟ ଦହନ୍ତି ।୧୪।

ଲହୁଣୀ ଦହି ଗୁଡ଼ ଅବା ଚିନି
ଦୁର୍ଦ୍ଦୁରା ଫୁଲ ଅବା ଫଳ ଆଣି
ଗୟସ ଫୁଲ ଓ ସମି ପତର
ଚଢ଼ାଏ ଯେ ଭକ୍ତ ତାଙ୍କ ଉପର
ତୁଳସୀ ବେଲ ପତର,
କୃପା ସେ କରଇ, ପ୍ରାରବ୍ଧ ନାଶଇ,
କାର୍ଯ୍ୟ ସିଦ୍ଧି ହୁଏ ତାର ।୧୫ ।

ପ୍ରଭୁ ମୋହର ପତିତପାବନ
ତାକଥା ଅପୂର୍ବ ପବିତ୍ର ପୁଣ୍ୟ
ଅନନ୍ତ କଥା ଅଟଇ ତାହାର
ବର୍ଣ୍ଣିଲି ଯେତେକ ମୋତେ ଗୋଚର
ଦୋଷ ମୋ ଧରିବ ନାହିଁ,
ଲଡ୍ଡୁବାବାଙ୍କର, ସୁମରି ପୟର,
ଲେଖିଲି ଯାହା ସେ କହି ।୧୬ ।

ଭକତେ ଭକତିର କଥା ଏହି
ଭକତି ରସରେ ଅଛି ମୁଁ କହି
ବୁଝିବ ପଢ଼ିବ ଭକତି ଭରେ
ତେବେ ହିଁ ମଜିବ ଭକ୍ତି ରସରେ
ମନ ହୃଦୟେ ଭକତି,
ନିଶ୍ଚେ ଭରି ଯିବ, ଆନନ୍ଦ ମିଳିବ,
ଭକ୍ତି ଦେବେ ଉମା ପତି ।୧୭।

ସୁରେଶ ବରାଡ଼ ଦାସର ନାମ
ଶିକ୍ଷକତା ଅଟଇ ମୋର କାମ
ହରିହରପୁର ଗ୍ରାମରେ ବାସ
ନୟାଗଡ଼ ଜିଲ୍ଲା ଓଡ଼ିଶା ଦେଶ
ଖଣ୍ଡାୟତ ଚଷା ଜାତି,
ଲଡ୍ଡୁବାବାଙ୍କର, ଅଭୟ ପୟର,
ଚିନ୍ତଇ ଦିବସ ରାତ୍ରି ।୧୮ ।

ଏ ରଚନାରେ ନାହିଁ ଶ୍ରେୟ ମୋର
ମୋ ହୃଦେ ସେ କରେ ଯେହ୍ନେ ସଞ୍ଚାର
ତାକୁ ମୁଁ କେବଳ ରୂପ ଦିଅଇ
ତାକୁ ଜଣା ସିଏ କିସ କୁହଇ
ଦୋଷ ଥିଲେ ତାହା ମୋର,
ଶ୍ରେୟ ଯଦି କିଛି, ରଚନାରେ ଅଛି,
ତାହା ଅଟଇ ପ୍ରଭୁର ।୧୯ ।

ପାର୍ବତୀପତିଙ୍କ ପାଶେ ମୋ ଅଳି
ପୂରଣ କରନ୍ତୁ ମୋର ଅର୍ଦ୍ଧଳୀ
ଲଡ୍ଡୁବାବାଙ୍କର ଛନ୍ଦା ଚରଣ
ମନ ମୋହର ଚିନ୍ତୁ ଅନୁକ୍ଷଣ
ଦୟା ମୋ ଶିରରେ ଥାଉ,
ଚରିତ ତାହାର, ଦରବାରେ ତାର,
ଅଚିରେ ଆଦୃତ ହେଉ ।୨୦।







ସୁରଭାଇ ନୟାଗଡ଼ ଜିଲ୍ଲା ଅନ୍ତର୍ଗତ ଶରଣକୁଳ ନିକଟବର୍ତ୍ତୀ ହରିହରପୁର ଗ୍ରାମରେ ଏକ କୁଳୀନ ଖଣ୍ଡାୟତ ପରିବାରରେ ୧୯୬୮ ମସିହା ଜୁଲାଇ ୬ ତାରିଖରେ ପିତା ଗୋବିନ୍ଦ ବରାଡ଼ ଓ ମାତା ପଦ୍ମାଙ୍କର କୋଳମଣ୍ଡନ କରିଥିଲେ। ୧୯୭୩ ମସିହାରେ କରଡ଼ା ହରିହରପୁର ପ୍ରାଥମିକ ବିଦ୍ୟାଳୟରେ ବିଦ୍ୟାଧ୍ୟୟନ ଆରମ୍ଭ କରି ୧୯୭୮ ମସିହାରେ ନାରାୟଣ ଉଚ୍ଚ ବିଦ୍ୟାଳୟକୁ ଷଷ୍ଠ ଶ୍ରେଣୀରେ ଅଧ୍ୟୟନ ନିମନ୍ତେ ଗମନ କରିଥିଲେ। ୧୯୮୦ ମସିହାରେ ସପ୍ତମ ଶ୍ରେଣୀ ବୃତ୍ତି ପାଇ ସେହି ବିଦ୍ୟାଳୟରୁ ୧୯୮୩ ମସିହାରେ ପ୍ରଥମ ଶ୍ରେଣୀରେ ମେଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ସେହିବର୍ଷ ନୟାଗଡ଼ କଲେଜରେ ଉଚ୍ଚ ମାଧ୍ୟମିକ ଶ୍ରେଣୀରେ ବିଜ୍ଞାନ ବିଷୟ ରଖି ନାମ ଲେଖାଇଥିଲେ। ପରେ ସେଇଠି ପଦାର୍ଥ ବିଜ୍ଞାନ ସମ୍ମାନ ସହ ୧୯୮୯ ମସିହାରେ ସ୍ନାତକ ଡ଼ିଗ୍ରୀ କୃତିତ୍ୱର ସହିତ ହାସଲ କରିଥିଲେ। ୧୯୯୪ ମସିହାରେ ଭଞ୍ଜ ବିହାର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ଅର୍ଥନୀତି ବିଷୟରେ ଓ ୨୦୨୦ରେ ଓଡ଼ିଶା ମୁକ୍ତ ବିଶ୍ୱବିଦ୍ୟାଳୟ, ସମ୍ବଲପୁରରୁ ଓଡ଼ିଆ ବିଷୟରେ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିଛନ୍ତି। ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ସେ ମାଧ୍ୟମିକ ବିଦ୍ୟାଳୟରେ ୧୯୯୦ ମସିହାରୁ ତାଲିମ ପ୍ରାପ୍ତ ହିନ୍ଦୀ ଶିକ୍ଷକ ରୂପେ କାର୍ଯ୍ୟରତ ଓ ବିଜ୍ଞାନ ତଥା ଗଣିତ ଅଧ୍ୟାପନାରେ ନିଯୁକ୍ତ ଅଛନ୍ତି। ସମୟାନୁବର୍ତ୍ତୀତା, ପରୋପକାରୀତା, ସଚ୍ଚୋଟତା, ନିୟମାନୁବର୍ତ୍ତୀତା, ଛାତ୍ରବତ୍ସଳତା ପାଇଁ ସେ ଛାତ୍ରଛାତ୍ରୀଙ୍କ ମଧ୍ୟରେ ବେଶ ପରିଚିତ। ଜଣେ ସମାଜସେବୀ, ଲେଖକ, କବି ଓ ଗବେଷକ ରୂପରେ ସମାଜରେ ସେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛନ୍ତି। ଗୁରୁକୁଳ ପ୍ରକାଶନ ତାଙ୍କର ନିଜସ୍ୱ ପ୍ରକାଶନ ସଂସ୍ଥା । ତାଙ୍କ ଦ୍ୱାରା ରଚିତ ମହିମାମୟ "ଲଡ୍ଡୁବାବା", "ପୁରୁଷୋତ୍ତମ ସ୍ତବ" ଓ ସମ୍ପାଦିତ "ଲଡ୍ଡୁବାବା ଭଜନ ମାଳା" ପ୍ରକାଶିତ ହୋଇ ଭକ୍ତ ମହଲରେ ଉଚ୍ଚ ପ୍ରଶଂସିତ। "କପିଳ ସଂହିତା" (ନୀଳାଚଳ କ୍ଷେତ୍ର ମହାତ୍ମ୍ୟ), "ଲଡ୍ଡୁବାବା ସ୍ତୋତ୍ରମାଳା", "ହନୁମାନ ବିଳାସ" ଓ କବିତା ପୁସ୍ତକ "ବିପ୍ଳବ" ପ୍ରକାଶ ଅପେକ୍ଷାରେ ମୁଦ୍ରଣାଳୟରେ ରହିଛି।






ମୁଦ୍ରଣ-ଜଗନ୍ନାଥ ପ୍ରିଣ୍ଟିଙ୍ଗ୍ ପ୍ରେସ୍, ଶରଣକୁଳ, ନୟାଗଡ଼ ମୋ-୯୮୫୩୨୫୨୮୪୩, ୭୦୦୮୫୯୨୮୭୧